ଲେଖକ

**ଶ୍ରୀ ଘନଶ୍ୟାମ ରଥ**


ଏଡ୍‌ଭୋକେଟ୍
ସମ୍ବଲପୁର



ପ୍ରକାଶିକା

**ଶ୍ରୀମତୀ ଲବଙ୍ଗଲତା ରଥ**

ନୂଆସାହି, ଭେଲପୁଟ
ଗଞ୍ଜାମ

ପ୍ରଥମ ପ୍ରକାଶ
୧୯୬୩

ମୁଦ୍ରଣ

**ନବଜୀବନ ପ୍ରେସ୍**

ବୁଢ଼ାଙ୍ଗଚୌକ, କଟକ-୨

ମୂଲ୍ୟ

**ଦୁଇଟଙ୍କା**

## ସ୍ୱୀକାରୋକ୍ତି

ଓଡ଼ିଶାର ଅସଂଖ୍ୟ ଗାୟକ, ଗାୟିକା, ଶିଳ୍ପୀଙ୍କ
ହସ୍ତରେ ଅର୍ପଣ କଲି ।

**ଘନଶ୍ୟାମ ରଥ**
ଆକାଶବାଣୀ ଗୀତିକାର

କବିଚନ୍ଦ୍ର କାଳୀଚରଣ ପଟ୍ଟନାୟକ ଫୋନ : ୨୩୮୨୬
ଜଗନ୍ନାଥ ବଲ୍ଲଭ
କଟକ-୧

ଶ୍ରୀ ଘନଶ୍ୟାମ ରଥଙ୍କ ରଚିତ 'କହ୍ଲାର'ଟିରେ ଶହେଟି ପାଖୁଡ଼ା । ଏଥିରେ ପ୍ରାକୃତ ପ୍ରେମ, ଅପ୍ରାକୃତ ରାଧାକୃଷ୍ଣ ପ୍ରେମ, ଆଉ ପ୍ରଭୁ ଚରଣରେ କବିଙ୍କ ମନର ନିବେଦନ ସଜଡ଼ା ହୋଇଛି ।

ଆଜି ଏଇ ଆଧୁନିକ ସଙ୍ଗୀତର ଜୁଆରିଆ ଯୁଗରେ ଘନଶ୍ୟାମ ବାବୁ ଆମ ପରଂପରା ନ ପାସୋରି, ଓଡ଼ିଶୀ ଛନ୍ଦ, ସ୍ୱର, ତାଳ, ଜମକ, ଅନୁପ୍ରାସ ବିଶେଷତଃ ଗୀତ ସହିତ ଆମର ପଡ଼ିଖଞ୍ଜା ରୀତି ବଜାୟ ରଖି ଗୀତଗୁଡ଼ିକ ରଚନା କରିଛନ୍ତି । ମନେ ହେଉଛି, ଘନଶ୍ୟାମ ବାବୁ ନିଜେ ଗାଇ ପାରନ୍ତି ; କାରଣ ଭାବ ରସକୁ ମନାଇଁ ସ୍ୱରତାଳ ଅନୁସାରେ ଗୀତଗୁଡ଼ିକ ରଚିତ ବୋଲି ଅନୁଭବ କଲି । ଏଗୁଡ଼ିକ କବିତାଧର୍ମୀ ନୁହେ—ସଂଗୀତଧର୍ମୀ । ସଂଗୀତରେ କବିତା ଥାଏ ନାହିଁ । ଯତି, ଯମକ, ଅନୁପ୍ରାସ କବିତାର ଧର୍ମ—ସଂଗୀତରେ ଗୋଟିଏ ବଡ଼ କଥା ଥାଏ, ସେଇଟି ହେଲା – କବିତାର ଧର୍ମ ସହିତ ସ୍ୱର, ତାଳ ସଂଯୋଜନା ।

ଅଳ୍ପ ଦୁଇ ଚାରିଟି ସ୍ଥଳରେ ଶବ୍ଦଯୋଜନା ଟିକିଏ ଅଖଂଜିଆ ଲାଗିଲା । ଅର୍ଦ୍ଧକାଂଶ ଗୀତ ମୁଁ ଗାଇ ଦେଖିଛି, କୌଣସିଟି ଅଖଂଜିଆ ଲାଗୁନାହିଁ । କେତେକ ଗୀତରେ ଆମର ସ୍ୱତନ୍ତ୍ର ଚଳଣି ଶବ୍ଦର କୁଶଳୀ ଯୋଜନା ବଡ଼ ମଧୁର ଲାଗୁଛି ।

ପ୍ରାକୃତ ଓ ଅପ୍ରାକୃତ ରାଧାକୃଷ୍ଣ ପ୍ରେମ-ଲୀଳାବର୍ଣ୍ଣିତ ଗୀତ ସହିତ କବି ତାଙ୍କ ଅନ୍ତରର ପରିଚୟ ଦେଇଛନ୍ତି ପ୍ରଭୁ ଚରଣରେ ଆତ୍ମନିବେଦନ ଗୀତ ମଧ୍ୟରେ ।

ଗୋଟିଏ ଅଭାବ ମୁଁ ଅନୁଭବ କଲି—ଭଲ ହୋଇଥାନ୍ତା, ଗୀତଗୁଡ଼ିକରେ ରାଗ ତାଳ ନିର୍ଦ୍ଦେଶନା ଥିଲେ ।

ସଂଗୀତଗୁଡ଼ିକ କୁହେଳିକାରେ ନୁହେ— ଅବୋଧ ନୁହେ— ଅରୁଚିକର ମଧ୍ୟ ନୁହେ ।

ଏ 'କହ୍ଲାର'ଟି କଳିକା ନୁହେଁ ପ୍ରସ୍ଫୁଟିତ କହ୍ଲାର—ସୁବାସ-ଭରା—ଲୋକର ଆଦର ପାଇବ ।



# ପଦେ......

ବହୁ ଦିନର ସ୍ୱପ୍ନ—ଓଡ଼ିଶୀ କିଛି ଲେଖିବି। ମସିହା ୧୯୪୫-୪୭ରେ ଓଡ଼ିଶୀ ରଚନା ଆରମ୍ଭ କରିଥିଲେ ସୁଦ୍ଧା ସମୟସ୍ରୋତରେ ବାଧାପ୍ରାପ୍ତ ହୋଇଥିଲି । ପୁଣି କଲମ ଧରିଲି ୧୯୭୬-୭୭ ମସିହାରୁ। ୧୯୭୭ ମସିହାଠାରୁ ରଚିତ କେତେକ ଗୀତି-କବିତା 'ରାସ-ରସାମୃତ' ନାମରେ ପ୍ରକାଶ ପାଇଛି। 'ରାସ-ରସାମୃତ' ତଥା ଏହି 'କହ୍ଲାର'ରେ ସନ୍ନିବେଶିତ ବହୁ ଗୀତି-କବିତା ଏବଂ ଓଡ଼ିଶୀ ଆକାଶ-ବାଣୀ କଣ୍ଠକଙ୍କଦ୍ୱାରା ପ୍ରଚାର ପାଇଁ ସ୍ୱୀକୃତ ହୋଇଅଛି। ତନ୍ମଧ୍ୟରୁ କେତେକ ମଧ୍ୟ ବିଭିନ୍ନ ଶିଳ୍ପୀମାନଙ୍କଦ୍ୱାରା ପ୍ରଚାରିତ ହୋଇଛି। ଆକାଶବାଣୀର କର୍ମକର୍ତ୍ତା ତଥା ଶିଳ୍ପୀମାନଙ୍କୁ ମୋର କୃତଜ୍ଞତା ଜଣାଉଛି।

ଏହି ସଞ୍ଚୟନରେ ଅନ୍ୟାନ୍ୟ ଉପାଦାନ କିଛି କିଛି ଥିଲେ ସୁଦ୍ଧା ବହୁ କିଛି ଆହରଣ ଆସ୍ୱାଦିତ। 'କନକାଙ୍ଗୀ ରେ', 'ଏ ଘନ କାଳରେ', 'ରେ ଯୋଷାବର' ପ୍ରଭୃତି ତାର ଉଦାହରଣ। ରାଧାକୃଷ୍ଣ ସାହିତ୍ୟସମ୍ଭାର ଓଡ଼ିଆ ସାହିତ୍ୟରେ ବହୁ ମାତ୍ରାରେ ରହିଛି। ସେହି ପାରାବାର ମଧ୍ୟରେ କେତୋଟି ବାରିବିନ୍ଦୁ ପରି ଏହି 'କହ୍ଲାର'ର ଉପାଦାନ। ସମୁଦ୍ର କୌଣସି ଜଳବିନ୍ଦୁକୁ ପରିତ୍ୟାଗ କରିନ।

‘ଅନାଥରେ ମିତ’, ‘ଏ ତ କାଳିଆ’, ‘ଭଜରେ ମନ’ ପ୍ରଭୃତି କେତେକ ଗୀତ-କବିତା ରହିଛି, ଯାହା କି ଭକ୍ତିରସାତ୍ମକ । ଭଗବାନ ମନ୍ଦିରରେ ରହନ୍ତୁ ବା ମାନବର ମନରେ ରହନ୍ତୁ, କବି ଭଗବାନଙ୍କୁ ଉପେକ୍ଷା କରିପାରେନି ।

ପାଠକମାନଙ୍କ ମତାମତ ଉପରେ……

ବିଷୁବ
୧୩ । ୩ । ୧୯୭୩
ସମ୍ବଲପୁର

**ଶ୍ରୀ ଘନଶ୍ୟାମ ରଥ**

# ଗୀତି-ସୂଚୀ

( ୧ )

ଢଳଢଳାଙ୍ଗୀ ରେ......

ଢର ଘର ଚାପ ମୋର ଦେବୁ କ ଷ୍ଟଙ୍ଗିରେ (ଘୋଷା)
ମୁଖ ସଙ୍କାଶଶୀ ନୁହେ ଲକ୍ଷ୍ୟ,
ରକ୍ତପଦ୍ମ ହୋଇବ ବିପକ୍ଷ
ନାସା ବସଣି ନାଚେ ସୁଦକ୍ଷ
ଚକ୍ଷୁ ଯା ଦେଖିଲି ଆଜ ନବରସ ଭଙ୍ଗୀ ରେ । ୧ ।

ଶମ୍ଭୁସେବା ଫଳ ମିଳେ ଅବା
କଷ୍ଟ ଶମ୍ଭୁ ପାଇବ କ ସେବା
ଶମ୍ଭୁ ଆଳସ୍ୟ କ ଲଗି ଯିବା
କର ଲଗି କର ମୋର, ସଣ ଚଳାପାଙ୍ଗୀ ରେ । ୨ ।

ସାର ନତମ୍ବ ଦୁଇ କଟିର
ଆଜି ସମସ୍ତ ସିନା ଅସାର
ରସେ ନଚ ଚକ୍ଷୁ ବାର ବାର
ରସାଳସା ଚତୁରସା ସୁରସା ଅଙ୍ଗୀ ରେ । ୩ ।

ଯାବେ ହେବ ପଞ୍ଚେ ତୋର ଦାସ
ସଦା ଖଟି ଥିବ ତୋର ପାଶ
ମାର ପଞ୍ଚଶର କର ନାଶ
ବାସ ଦେଇ ରଖ ଯଶ ଆଶା ନ ଭଙ୍ଗି ରେ । ୮ ।



୨୮-୫-୬୮

( ୨ )

ଏ ଘନ କାଳରେ ପ୍ରିୟା କପଟ ରେ
କାହିଁଥିବ କାଳଚକ······(ଘୋଷା)

ହେମ-ତୋଷ ବାଳା   ନୟନପିତୁଳା
ହେଜୁଥିବ ମନେ   ବପଘାତ ଖେଳା
(ପଦ) ଉତପତ ଶାୟକ   ଗୁନ୍ତରେ ଯାଇ ଦକ
ଧ୍ୱାନ୍ତରେ ମନେ ମନେ   ଚିନ୍ତିବ ହେ ନାୟକ
ଏ ଦିନେ ଆସି ରଖ   ହେଲାଣି ମୁଁ ନିରେଖ
ତବ ପଦର ଦାସୀ   ଗୁହାରି ରଖିବାକ । ୧ ।

ଦିବସ ରଜନୀ   ଏକା କରିବଣି
ଝୁରି ଝୁରି ତନୁ   କ୍ଷୀଣ ତ ହେବଣି
(ପଦ) ଘନ କୋଳେ ଚମକ   ବିଜୁଳି ଝକମକ
ବରଷା ରସା ଯାକ   ଭୟରେ ଥିବ ମୂକ
ଶିବରେ ମାନସିକ   କରିଥିବ କୋରକ
ଭାବୁଥିବ ମନରେ   ରଖ ପଙ୍କଜମୁଖ । ୨ ।

ଘନକେଶୀ ରନ୍ତି-　　ନପୁଣା ସୁମନ୍ତ
ମନ୍ତ ହଜଥିବ　　ଘୋଷି ପନ୍ତ ନନ୍ତ
(ପଡ଼)　ଗଜଦନ୍ତ ପଲଙ୍କ　　ଚେଜଥିବ ମୋ ରଙ୍କ
ବରହରେ ଭୂତଳେ　　ରଖି ଗୁନ୍ତ ପଦକ
ରକ୍ଷା କର ରସିକ　　ମୁଖରେ ଭାଷିବାକ
ଅତନୁ ଶର ଯାକ　　କାଳେ ହେବ ଭକ୍ଷକ । ୩ ।

ଶିଖି ନାଚ ଦେଖି　　କି ହେବ ସୁମୁଖୀ
ସତରେ ମୋ ସଖୀ　　ପ୍ରାଣ ରଖିବକ ?
(ପଡ଼)　ଏକରେ ଦକଦକ　　ମୁଣ୍ଡକ ମକମକ
ଭଦ୍ରରେ ଥରୁଥିବ　　ବାଳୀ ଗୁନ୍ଥ ପଦକ
କଳା କୁଶଳା ଧର　　ମଣ୍ଡନା ରତ୍ନ ନକ
ପଶ୍ରୁର ପଛକ　　ହେବ ମାଗେ ଏତେକ । ୪ ।



୨୩-୬-୬୮

( ୩ )

ରେ ଯୋଷାବର,
ବାରେ ଦେନ ଗୁହାରି ମୋହର (ପଦ)

ବରଷା କାଳରେ ମିତ　　ଗୁଡ଼ଗଲେ ନନ୍ଦସୁତ
କଣ୍ଠ କରି ଧନ ସାତ　　ଫେରି ଆସିଲେ ନାହିଁ ତ
ଏ ଜୀବନ, ହେଲା ଗୁରଭାର ରେ । ୧ ।

ଭଗତ ସେନେହ ଯାକ ଜବାବ ଦେଲେ ସେତେକ
ଭୁଲିଗଲେ ପଦ୍ମମୁଖ ହୋଇଲି ମୂର୍ଖି ନରେଖ
ଏ ଯୌବନ, ଅକାରଣ ମୋର ରେ । ୨ ।

ବଚନ ଭାଷିଲେ ଭନେ ବସାଇ ପାଶେ ଯତନେ
ରହିବେ ଚ୍ଛାୟା ଯେସନେ ମୋର ପାଶେ ପ୍ରତିକ୍ଷଣେ
ସେ ମୋହନ, ମିଛେ ଚ୍ଛନ୍ନ ଚ୍ଛେର ରେ । ୩ ।

ବାହାବାଣୀ ଯୁଗ ହେଲା ବିଧାତା କି ଦୁଃଖ ଦେଲା
ମାର ଦୟା ନ ବହିଲା ଅନାମତେ ଚେତାଇଲା
ଏ ପରାଣ, ସ୍ଥିର ରଖିବାର ରେ । ୪ ।



୪-୮-୬୮

( ୪ )

ଲୋକେହସା କଲା ରସା ଶ୍ୟାମଘନଟି (ପଦ)

ହଟିଆ ନାଗରବର ନଟକୁଟିଆ ଅପାର
କି କହିବ ସବୁ ତାର ଚରିତ ନୟନଠାର
ଦୂରରୁ ଶତ ଜୁହାର ନନ୍ଦପୂଅ କପଟି । ୧ ।

ମୁରଲୀ ଧରି ଅଧର ଗୋପ ସାରା କଲା ଜୁର
ଡାକେ ବସି ବାର ବାର ଗୋପିକା ଯମୁନାତୀର
ଜାଣେ କୁହୁକ ମନ୍ତ୍ରର ମାନ ସାରି ଦେଲାଟି । ୨ ।

କଦମ୍ବ ମୂଳେ ଛା ଘର
ବସନହୀନ ଶରୀର
ଯାହା କରେ ହରବର

ସହକେ ବସନଚ୍ଚୋର
ଦର୍ଶନେ ତୋଷ ଅପାର
ଶ୍ୟାମଘନ ଲମ୍ପଟି । ୩ ।

ପର ହେଲ ମୋର ମାର
ଶରଣ ଗଲେ ପଯୂର
ପାଇ ନନା ଭ୍ରର ଭ୍ରର

ମରମେ ମାରଇ ଶର
ତଥାପି ନ ଶୁଣେ ଗୀର
ପ୍ରାଣ ମୋର ଗଲାଟି । ୪ ।



ଟ-ଟ-ଓଟ

( ୫ )

ଶ୍ରୀଅଙ୍ଗ ସଙ୍ଗ ମୋ ସାଙ୍ଗ ସରିଗଲାଟି ରେ···(ପଦ)

ରଙ୍ଗା ଅଧର ମୁରଲୀ
ସାଙ୍ଗ ଛଡ଼ା ଯାହା ହେଲ

ସ୍ୱନ ହୋଇଲାଣି ଖାଲ
ଏବେ ମଲାଟି ରେ । ୧ ।

ଚନ୍ଦ୍ରାବଳୀ ଅଙ୍ଗସୁଖ
ଫାଙ୍କି ସଖୀ ଦେଲେ ଦୁଃଖ

ପାଇଲେ ପଙ୍କଜମୁଖ
ଦଗ୍ଧ ହେଲାଟି ରେ । ୨ ।

ପୂରୁବ ଘର ଭଙ୍ଗିଲେ
ପଙ୍ଗୁ କରି ମୋତେ ଗଲେ

ନବଘର ଆଦରିଲେ
ନର ବୋଲାଟି ରେ । ୩ ।

ଗଂଗାଧର ପର ମାର
ସଙ୍ଗତେ କେ ନାହିଁ ମୋର

ଫିଙ୍ଗଇ କୁସୁମଶର
ଜୀବ ଦେଲାଟି ରେ । ୪ ।

ଧାଇଁ ଯାଇ ରମାପତି
ରଙ୍ଗ ଗୁଡ଼ ସାଙ୍ଗ ପ୍ରତି
ଫେଡ଼ ଫେଡ଼ ମୋ ଦୁର୍ଗତି
ଦାସ ବୋଲଇ ରେ । ୫ ।

●

୬-୯-୬୮

( ୭ )

କୁଞ୍ଚିତକେଶୀ ମୋତେ ମୂର୍ଚ୍ଛିତ କରନା ରେ
ତୋ ଚିତ୍ତେ ମାନ ଧରନା···(ପଦ)

ଲଞ୍ଛନା ଦେବୁ ଯିନା
କି ଫଳରେ ନଜାନା
ଆଜ କେ ତୋର ଜନା
କରିବ ମୋତେ ସେନା ରେ । ୧ ।

ପାଞ୍ଚଟି ଦିନ ପାଇଁ
ଗଲି ବିଦେଶ ମୁହିଁ
ପାଇଲୁ ମନ ଭୁଇଁ
ଏ ବିଷମ ଭାବନା ରେ । ୨ ।

ଅଞ୍ଜଳି ସଖୀ ତୋତେ
ଗୁମାନ କଥା ଏତେ
ଅଭିମାନ ସରିତେ
ଆଜ ବେଣୀ ଭସନାରେ । ୩ ।

ବଞ୍ଚାଅ ଲକ୍ଷ୍ମୀଥିବ
ଧରି ମଣ୍ଡନା ଧୀର
ମାର ମାରୁଛି ପର
ଶର ତନୁ ସହେନାରେ । ୪ ।

ଚଞ୍ଚଳା ସ୍ମିତହାସୀ
ଦୂଆଅ ଦୁଃଖ ରାଶି
କାମ-ସାଗରେ ଭସି
ଯାଉଛି ରଖ କନା ରେ । ୫ ।

●

୧-୧୦-୬୮

( ୭ )

ଏତକରେ ଚେତ ହେ
ଚେତ କୃଷ୍ଣ ନାଗର···(ପଦ)

ଯେତକ ହେଲଣି କଥା ବଳଲଣି
ମଥା ଟେକ ଯିବା ହେଲଣି ଦୂର । ୧ ।

ପରସ୍ତିରପ୍ରତ ମତ ନତ ନତ ଅତ ପରପଞ୍ଚ ଜାତ ବାହାର
ସଖିସହ ମାତ ପୂହାଇଲ ସ୍ୱତ ଗ୍ରନ୍ଥି ଗାର ମୋର କରବ ଦୂର । ୨ ।

ଚେତ ମୋର କତ ଆସିବ କପଟି ଅତ ଦୁଷ୍ଟ ଶାଶୁ ନଣନ୍ଦ ମୋର
ନଶିଶେଷେ ପତ ଗୋଠରୁ ଆସନ୍ତ ଅସଖି ବୋଲବେ ପ୍ରାଣଈଶ୍ୱର । ୩ ।

କହ୍ନ ରସବଣି ବୃନ୍ଦୁ ଭ୍ରଷା ନତ
ନତ ଖେଳ ଘର ବଡ଼ ସୁନ୍ଦର
ମାଗୁଣି ମୋ ଇତ ନାହିଁ ଅନ୍ୟ ଗତ
ଚେତବେ ରମଣୀ ସଦନ ଫେର । ୪ ।



୧୯-୧୦-୬୮

( ୮ )

ନଶି ଅବଶେଷ ସମୟ ପ୍ରବେଶ
ଶମ୍ଭୁ ଆଳେ କମ୍ବୁ ଶବଦ
ଗୋପେ ନନ୍ଦରାଣୀ ଶଯ୍ୟା ଚେତ ପୁଣି
ଡାକନ୍ତ ଉଚ୍ଚରେ ଗୋବନ୍ଦ

ରଜନୀ, ଗୁଣ୍ଠିଁଲଣି ପଶ ମେଲଣି
ଉଠ ଉଠ ଧନ ମୋ ରଙ୍କରତନ
କୁକ୍କୁଟ ରବ ଲଟିଲଣି । ୧ ।

ମନ୍ଦ୍ବଷ ଗୁହାଳ ଶୁଭଇ ଚହଳ
ନୁହନ୍ତି ଗୋପାଳ ବାଳକେ
ଗୋ'ପଲ୍ ଯେତେକ ଦେଉଛନ୍ତି ଡାକ
ବାଛୁରୀ ପାଇଁକ କଣ୍ଠକେ
ଡାହୁକ, ବାହୁକ ଶୁକ ପିକ ଡାକ,
ଚହଳ ବହୁଳ କାକ କରେ ଗୋଳ
ଡାକୁଛନ୍ତି ଗୋପ ବାଳକ । ୨ ।

ଗତ କଥା ସ୍ମରି ଗୋପେ ବହୁ ନାରୀ
କଲେଣି ତ ଦୁଃଖେ କ୍ରନ୍ଦନ
କୁଳ ଭୁଆସୁଣୀ ଗାଧୋଇ ଗଲେଣି
ଛେରା ପଡ଼ିଲଣି ସଦନ
ମୋହନ, ଦୂରଯାତ୍ରୀ ଗୃହ ତେଜିଣ
ଯେ ଯାହା ବେଶରେ ଚଳଲେଣି ନରେ
ତେଜିଲେଣି ସର୍ବେ ଶୟନ । ୩ ।

ଯେତେ ନିଶାଚର ଆପଣା ମନ୍ଦିର
ଫେରିଲେ କରମ ଆଦର
ପୂରୁବ ଆକାଶ ରକତ ବିଶେଷ
ଅରୁଣ ପ୍ରକାଶ ପ୍ରଦର୍ଶୀ

ମୋହନ, ଅଳିକୁଳ କଲେ ଗୁଞ୍ଜନ,
ପଙ୍କଜ ବନ୍ଧନ ହେଲାଣି ସ୍ୱାଧୀନ
ଦିବାକର ପାଇଁ ପ୍ରସନ୍ନ । ୪ ।

ଯେତେ ଦ୍ୱିଜ ରାଜ ନୃପଙ୍କ ତେଜ
ରାମ ନାମ ରଟି ପାଗଳ
ପଞ୍ଜୁରୀର ଶୁକ ଦେଉଛନ୍ତି ଡାକ
ଚକ୍ରଧର ରୋଳ ପ୍ରବଳ
ମୋହନ, ଉଠ ଉଠ ଶେଯୁ ବହନ,
ଗୋପାଳ ବାଳକ ଦେଉଛନ୍ତି ଡାକ
ବନସ୍ତେ ନେବାକୁ ଗୋଧନ । ୫ ।



୭-୧-୭୦

( ୯ )

ତୋ ମୂରତି, କାରତି ମୋ ଛାତି
ରେ ରସବନ୍ତି······(ଘୋଷା)

ରତିନିପୁଣା ରେ ସଖି, ଛ'ଉଣା ସବୁରି ଜାତି
ହାତି ଗମନା ମୋ କତି, ତେଜନା ଶେଯ ସୁପାତି । ୧ ।

ରତିରମଣ ନୃପତି, ଘରେ ନତ ଭ୍ରମ ମତି
ଯୋଗ ତେଜ ଗୃହେଁ ଯତି, ଇନ୍ଦ୍ର ଦେବ ଇନ୍ଦ୍ର ଭୂତି । ୨ ।

ପିକକଣ୍ଠା ବାଣୀ ପ୍ରତ, ମୋ ଅନ୍ତର ଧାଏଁ ନତ
ବାନ୍ଧି ରଖିବା ଶକତ, ଜନା ସିନା ସଙ୍ଗେ ଧୃତ । ୩ ।

ଜଅନା ଆଜ୍ଞ କରନ୍ତ, ସରଯାଏ ନତ ନତ
ଚୋର କର ଚଳେ ସ୍ୱତ, ପାହୁ ସୁଖେ ମଧୁମତ୍ତ । ୪ ।



୧୨-୪-୬୦

( ୧୦ )

ଜଣିଥରେ ଥରେ ଆସ,
ପରଶିରଞ୍ଜ ମାନସ ।
ସୁମନସ ହାର ମୋର,
ଲୁହ ଭରେ ଯାଏ ନାଶ । ୧ ।

ଭୁମ ଜନା ଏ ନଜନା
ଅନାଥରେ ହେବ ଶେଷ
ମନା ତେଜ କର ଖେନା
ଅରତି ରତି ଜଳାସ । ୨ ।

ନାଗରବର ମୁଁ ତୋର,
ନାଗରୀବାଳେ ଜଶେଷ
ନ ରଞ୍ଚ କୂଟ କାଟି,
ନାଗରୀ ମାନସ ତୋଷ । ୩ ।

ବନଜାକ୍ଷୀ ସଖୀ ସାକ୍ଷୀ
ଫୁଲ୍ ଗନ୍ଧର ଅଶେଷ
ସେ ବନର ସ୍ୱପ୍ନ ମନେ
ପକାଅଛି ନାଗେଶ୍ୱର । ୪ ।



୧୩-୪-୭୦

## ( ୧୧ )

ଗଜଗମନା, ଜଲ ଯଗ୍ନ ମନା ରେ (ଘୋଷା)

ନ ଅନାରେ ସୁମନା, ଅନାମତେ ବଦନା
ଅନାଇଁଣି ସେବକ, ମନା ମୋ' କର ଢେନା ।
ଅନୁଦ୍ଦନ ନଦନା, ଆଜ୍ଜ କଦନା । ୧ ।

ସୁନାବରନା ଗୋସ୍ଥ, ନ ଅନାଅ ଗୋ ଫେର
ପୀନସ୍ତନା ଭୋ ସ୍ୱସ୍ତ ଜଘନା ବଧ ଘାର,
ଧର କର କରୁଛୁ, ମନା ସିନାରେ । ୨ ।

ବନଜା ମଦାଳସା, ମାର ଘାତେର ମନ୍ଦଷା
ବେଣୀଚ ସମଦର୍ଶା, ବାଜୁଛୁ ନାଦଘୋଷା
ଆଜ୍ଜ ନ କର ପେଶା ଭୂମଣ୍ଡନାରେ । ୩ ।



୭-୫-୭୦

## ( ୧୨ )

କୁଞ୍ଜବନେ କଞ୍ଜମୁଖ ରଞ୍ଜିଲା ରେ
ରାଧାପାଇଁକି ବିଧି ଖଞ୍ଜିଲାରେ (ପଦ)

ଭକ୍ତପ୍ରାଣ ରଞ୍ଜନ, ଦୁଷ୍ଟଗର୍ବ ଗଞ୍ଜନ
ଯଶୋଦା ପ୍ରାଣଧନ ହଜିଲାରେ । ୧ ।

ନିକୁଞ୍ଜେ ଧରି ବଂଶୀ, କି ଖଞ୍ଜେ ନାଏ ତୋଷି
ଗୂଢ଼ ଗଞ୍ଜଣା ଭଲ ଚେଜିଲାରେ । ୨ ।

ସଞ୍ଜ ସକାଳ ଜ୍ଞାନ ନାହିଁ ଗୁଞ୍ଜି ପ୍ରମାଣ
ଜଞ୍ଜାଳ ଜାଳି ରାଧା ଗଞ୍ଜିଲାରେ । ୩ ।

କୁଞ୍ଜ ପୁଞ୍ଜ ପଞ୍ଜରା, ରାଧା ପ୍ରେମ ମଞ୍ଜୁଷା
ଚିଞ୍ଜି ମନ୍ତ୍ର ମଞ୍ଜୁଳ, ଲଞ୍ଜିଲାରେ । ୪ ।

କଞ୍ଜାର ନେତ୍ରେ ଜ୍ଞାତ, ବ୍ରଜଜନମା ପ୍ରାପତ
ଭଞ୍ଜି ଭକ୍ତ ଆରତ, ଭୁଞ୍ଜିଲାରେ । ୫ ।



୨୪-୬-୭୦

ଆକାଶବାଣୀ ସୌଜନ୍ୟରୁ—ମଳୟ ମଞ୍ଜୁଷା ସାହୁ

( ୧୩ )

ନବନା ବନା ମନ୍ତ ହଜଲରେ
ବନାଶ ବଧୂମୁଖୀ ଖୋଜଲରେ (ପଦ)

ସୁରପୁର ପାସୋର, ସୁରପତ୍ତ ସଂସାର
ଅସାର ସାର ସିଏ ଚେଜଲରେ । ୧ ।

ଛାର ସରସା କେଣ୍ଡ, ସରସା ବଣେ ନାହିଁ
ସାରସ ମୁଖୀ ସାର ସାଜଲରେ । ୨ ।

ସରସିଜ ବଦନା, ଅଭିମାନ ମୋ ଧନ
ରସାଳସା ଗୁମାନେ, ମଞ୍ଜିଲରେ । ୩ ।

ରସବନ୍ତୀ ରସଦା ରସି ରସେ ଏକଦା
ରସହୀନ ଦରବେ, ହଜଲରେ । ୪ ।

ରସିକେ ଘେନ ଚଢେ଼, ରଣ ଓଲଟା ସେଢେ
ରସିକା ମାର ହାଟେ, ପୂଜଲରେ । ୫ ।



୨୯-୫-୭୦

ଆକାଶବାଣୀ ସୌଜନ୍ୟରୁ—ମଳୟ ମଞ୍ଜରୀ ସାହୁ

( ୧୪ )

ଆଜ ଆଉ ଚୁଷନାରେ, ରସାଳସା !
ମାରକରେ ଭୂଷନାରେ (ପଦ)

ରସାଇ ନଶିଦ୍ଧନ, ହସାଇ ଗେଲେ ଧନ
ଭସାଇ ପଞ୍ଚପ୍ରାଣ କାମନଘା ମୁହାଣ (ପଢ଼)

ତାରଣେ କଏ ହୁନା- ବରନା ତୋର ଵନା
ଵନନ୍ତ କର ଢେନା ତୁ ମୋର ପ୍ରାଣ ସିନା
ଶୀତାଂଶୁ ମୁଖୀ ଅନା ସଶଯାଏ ନବନା
କାରଣ କର ସଖି ବାରଣ ତୁ କରନା । ୧ ।

ନତମୁଖେ ବସନାରେ ରସାଳସା
ମାର ଶରେ ଚଷନାରେ,
ତୋ'କଟି ସରୁ ଧନୀ ପ୍ରକଟି ମନ୍ତ କଣୀ
ନକଟେ ତନୁ ଆଣି କାଟ ମାରଅଶନ । ୨ ।

ମୁଁ ତୋର ଦାସ ସିନାରେ ରସାଳସା
ଦାସ ନାଶ କରନାରେ ।
ଦୋଷ କଛୁ କରନ, ତୋଷିବ କବା ଦେନ
ନାଘଛଶ ଭାବନୀ, ରୋଷ ତେଜ ମାନନୀ । ୩ ।

ନତମୁ ତୁମ୍ଭି ଠାଣିରେ ରସାଳସା
ଦମ୍ଭ ଢଅଇ ହାଣିରେ
ସୁରତ ପ୍ରଣ ମନ୍ତ ବଳାରେ ରସବଣୀ
ବଳାଘନ୍ତ ବଭୂତି, ଘୁର ତୁ ମୋର କନ୍ତ । ୪ ।

କର କୋରକ କଣ୍ଠରେ ରସାଳସ
କହୁଛି କର ଧରିରେ ।
ରତି ପତି ସନ୍ଦେନା,  ଆଜ ପ୍ରାଣ ବନ୍ଦନା
କରୁଛି ପରି ମନା, ଶେଷ ଆଜ ବନ୍ଦନା । ୫ ।



·୧୨-୭-୭୦

( ୧୫ )

କଳା କହ୍ଲାଇ ବଜେ ଧିରିରେ, ମାନସ (ପଦ)

ମୀଳ ଇନ୍ଦିବର  ନନ୍ଦ ତନୁ ସା'ର
ସାଗରଜା ପାଶ ସୁବେଶରେ । ୧ ।

ଶୀରେ ଶୋଭେ ଶିଖି  ଚୂଳ କବା ଲକ୍ଷି
ଗୋପେ ଗୋପିକା କଲ୍ପ ବଣରେ । ୨ ।

ଅସୁର ବନାଶି  ସୁର ନର ତୋଷି
ମାଳଗିରିରେ କଲେ ବାସ ରେ । ୩ ।

ସାଗରଜା ବାଳୀ  କେତେ ତପ ପାଳି
ଲଭିଛି ଚରଣ ସାରସ ରେ । ୪ ।

ଚକା ଆଖି ଦେଖି          ପିବ ଲଭ ସୁଖୀ
ସେ ପଦ ରଜ ସଦା ଆଶରେ । ୫ ।



୨୯-୭-୭୦

( ୧୬ )

ଚେଜ ଚେଜ ଆଜ ସଖି ମାନ ଗୋ
ଢେଜ ଲଜ ଚେଜ କଥା ମାନ ଗୋ । ପଦ ।

ଯେନ ବ୍ରମା ବଚନ          ତୁ ମୋର ରଙ୍କଧନ
ଗୁଡ଼ ଆଡ଼ରୁଷା ଏବ୍ବ କ୍ଷଣ ଗୋ । ୧ ।

ଦେଖ ମାର ମାର୍ଗଣ          ମାରୁଛୁ କ୍ଷଣ କ୍ଷଣ
ତୋ ବନା ନବନା କେ ତାରଣ ଗୋ । ୨ ।

ଧନ୍ୟ ତମାର ପରଣ          ତୋର ଲଗି ଜୀବନ
ବନଜାକ୍ଷୀ ତୁମ୍ଭ ତ କାରଣ ଗୋ । ୩ ।

ରମାପତି ଶରଣ          ରମା ଓଲଟା ବାଣ
ବାରଣ ପାଇଁ ତୁମ୍ଭ ଭଜନ ଗୋ । ୪ ।



୩୦-୭-୭୦

( ୧୭ )

ମୋହନ ହେ, ଗୋପ ଶୋହନ ହେ
କୋପ କଲେ ଲୋପ ହେବୁ ଗୋପୀକାମାନ ହେ (ପଦ)

ଅଳପ ବୟସେ ଭେଳକ ପରିଟି
କଳପଶ୍ରେଣୀ ପୂତନା ନାଶନ ହେ ।
ଚଳପି ରଖିଛୁ ଗଳପ କେତେ ସେ
ସ୍ୱଳପେ କହୁଛୁ ଦୁଃଖଭଞ୍ଜନ ହେ । ୧ ।

କରୁଣା ଊଣା କଲେତ ହେବୁ ବଣା
କଣା ଜନ ପରି ନେଇ ଅଞ୍ଜନ ହେ,
ଅଜଣା ପରିଟି ହେଲେ କଣା ଜନେ
ହଣା ଚରୁ ପରି ଦଣା ଭଜନ ହେ । ୨ ।

ଆଶାକରି ନଶା ପାଇଲୁଟି ଦଶା
ଲୋକହସା ହେଲୁ କଲ ଏସନ ହେ
ଯୋଷା ଚନ୍ଦ୍ରାବଳୀ ପୂରେ କରି ବସା
ଭସାଇଲ କାମନଦ ଜୀବନ ହେ । ୩ ।

ବାନ୍ଧ ରଖିବୁ ଛନ୍ଦ କରେ କରକୁ
ନନ୍ଦନୁ ପଛକେ ଗ୍ରାଇଜ ଜନ ହେ
ମନ୍ଦହାସେ ଘାନବନ୍ଧୁ ନ ବାନ୍ଧଲେ
ଦ୍ୱନ୍ଦ୍ୱ ଫାନ୍ଦ ବନ୍ଦ କରିବୁ ମନ ହେ । ୪ ।

ଛନ୍ଦାଚରଣ ପଦ୍ମେ ମନ ଅଳିନ୍ଦ
ଦ୍ୱିଧା ତେଜଣ ଦିଅ ସୁଧାପାନ ଦେ
ନନ୍ଦାଦାଉ ଆଉ ସମ୍ଭବ କେତେକ
ବନ୍ଧା ଆମେ ତେଜ ମନରୁ ମାନ ଦେ । ୫ ।



୩୧-୭-୭୦

( ୧୮ )

ବନ୍ଦେ ଆଦିକନ୍ଦ ସଦାନନ୍ଦ ପଦକୁ
ପୁରନ୍ଦର ବନ୍ଦ୍ୟ ପାଦ ଦେଉ ମୋଦକୁ (ଘୋଷା)

ନନ୍ଦନନ୍ଦନ ସୁନ୍ଦର    ମନ୍ଦରଠେକା ଇନ୍ଦୁର
ବାନ୍ଧବ ଚାତ ପଙ୍କଜ ପଦ ଦ୍ୱନ୍ଦକୁ । ୧ ।

ଚିଶରାଜ ନନ୍ଦନାର,    ଆନନ୍ଦବର୍ଦ୍ଧନ ହର
ନାମମାତ୍ର ଖ୍ୟାତି ଲେଶ ପରମାଦକୁ । ୨ ।

ସାଗରଜା ପରିସ୍କର    ଗୋବିନ୍ଦ ନାମ ସଂସାର
ଅଳି ମୋ ମନ ଅଳିନ୍ଦ ମକରନ୍ଦକୁ । ୩ ।

ଶିଷ୍ଟ ସମାଜ ବନ୍ଦନ    ଦୁଷ୍ଟ ଗରବ ଗଞ୍ଜନ
ବନ୍ଧା ହରିହର ପାଦେ ଛେଦ ମନ୍ଦକୁ । ୪ ।

ପାଳନକର୍ତ୍ତା ମାଧବ ସଂହାରକ ଉମାଧବ
ଭକତଜନେ ସାଧବ କାହିଁ ଛନ୍ଦକୁ । ୫ ।



୮-୮-୭୦

( ୧୯ )

କି କଲୁ ସେ ମୋହନ ସଜନୀ ରେ
ସ୍ୱପନେ ଢଳେଇକଲୁ ରଜନୀରେ (ପଦ)

ପୁଣି ପୁଣି ସେ ଆସି ସେ ରୂପେ ପରକାଶି
ନାଚିବୁଣି ନାଚବୁ ସଙ୍ଗିନୀରେ । ୧ ।

ଚନ୍ଦ୍ରାବଳୀରେ ହିଂସା କର ସିନା ଏ ଦଶା
ଗୁମାନ କଲ କଥା ନ ମାନ ରେ । ୨ ।

ହଲାଇ ମୋର ତନୁ ଭୁଲାଇ ଦେଲୁ ମନୁ
ବୋଲି ଗୁମାନ ତେଜ ମାନନୀ ରେ । ୩ ।

ଧରି କରେ ଅଞ୍ଚଳ ନିଦ୍ରା ଭଙ୍ଗି ଚଞ୍ଚଳ
ମଥା ଲଜେ ପୋତି ଦେଲ ଭୂମି ରେ । ୪ ।

ଜୀବନ ଅକାରଣ          ମୋହନ ବିନା ଜାଣ
ବଞ୍ଚାଅ ପ୍ରାଣ ରସସଙ୍ଗିନୀ ରେ । ୫ ।



୯-୮-୭୦

( ୨୦ )

ହେଜୁକ ନା ଗତ କଥା, ଆରେ ମିତ
ହେଜୁକ ନା ଗତ କଥା ।
ବାର ବାର କରି ବାରଣ ମୁଁ କଲି
ନ ମାନି କଲୁ ଅନ୍ୟଥା । (ଘୋଷା)

କ ଦଶା ନପାଇ ଆସେ କୃଷ୍ଣ ଧାଇଁ
ସବୁବେଳେ ପୋଡୁ ମଥା । ୧ ।

ଭୋଜନ ଶୟନ ତେଜିଲେ ମୋହନ
ତୋର ପାଇଁ ପାଇ ବ୍ୟଥା । ୨ ।

ମୋହନ ମୁରଲୀ ବୋଲେ ମୁହିଁ ମଲି
ପଥ ହୁଡ଼େ ରାଧା ବୃଥା । ୩ ।

ଘଣ ତୋର ପଣ ଅଟେ ଅକାରଣ
ମାଧବ ହେଲେଣି ଅଥା । ୪ ।



୧୦-୮-୭୦

( ୨୧ )

ଯେନ ସଖୀ ବାଣୀକ
କହେ ଯୋଡ଼ ପାଣିକ (ଘୋଷା)

ମୂରଲୀ ଠାଣିକ ଦେଖାଅ ଆଣିକ
ଜୀବନ ରଖାଅ ବ୍ୟଥା ଜାଣିକ । ୧ ।

କହିବୁ ଶ୍ରୀଧର ଗତ ନାହିଁ ଧର
ରାଧା ତ ତାଙ୍କର ଜଣା ଏଣିକ । ୨ ।

ବୃଷଭାନୁ-ଜେମା ଦୋଷ କର କ୍ଷମା
କହିବୁ ଯାଆନ୍ତୁ ଇଚ୍ଛା ଯେଣିକ । ୩ ।

ନ ଆସିଲେ ପ୍ରାଣ ଆହେ ହୃଷିକେଶ
ରାଧିକା ଜୀବନ ଦେବ ଛେଣିକ । ୪ ।



( ୨୨ )

ବିଷାଦେ ଅଧୀର ଚିତ୍ତ    ଶୋକେ ପୁଣି ବିହ୍ୱଳିତ
ରାଧାପ୍ରିୟ ସଖି ଦେଖି ଭାଷି ଶ୍ରୀଧର ।
ସଖି ଗୋ ବୁଡ଼ିଲ ବିତ୍ତ    ସବୁ କଥା ଜାଣୁ ତୁ ତ
ଚିତ୍ତଚୋରସ ନାମ ମିଛ ହେଲ ବିଧିର ।
କ୍ଷଣିକ ସମୟ ଯାହାକୁ
କୃଷ୍ଣ ବିନା ଯୁଗ ଏବେ ଦେଖ ତାହାକୁ ।୧।

ନନ୍ଦିବନ ଅବସାନ    ତନୁ ମନ ଅବଶୀର୍ଣ୍ଣ
ମୋହନ ବଇଁଶୀ ତାନ ହେଲାଣି ଆନ
ରାଧା ପାଇଁକି ଜନମ    ଶନ ଦଶା ବିଧିବାମ
ସଖୀ ସକଳ ସୁଜାଣ ଦେଖ ବଦନ
ସରୋଜ ବିମଳ ଭଜୁଛି
ରାଧେ ରାଧେ କହି ନେତ୍ର-ନୀର ତେଜୁଛି ।୨।

ଧରୁଛି କର ଲଲାଟେ    କର ବୁଦ୍ଧି ଇଚ୍ଛମତେ
ରାଧା ଯଥା ଲୋଡ଼େ ମୋତେ ତେଜ ଗୁମାନ
ସୁମୋହନ ଉଚ୍ଚାଟନ    ଅବା କରାଇ ଗୁଣାଣ
ତାର ବିନା ପଞ୍ଚପ୍ରାଣ ଯିବ ବହନ
କହ୍ନବ ସଖୀକୁ ଏସନ
ରାଧା ବିନା କୃଷ୍ଣ ଜୀବ ନେବ ଶମନ ॥



୧୫-୮-୭୦

( ୨୩ )

ଶ୍ୟାମ ଦୁଃଖ ହେଲାଣି ଶେଷ
ରାଧା କୃଷ୍ଣ ବନା ହେବ କ ତୋଷ (ପଦ)

ବିରହ ବେଦନା ସରୋଜବଦନା
ସୁକୁନ୍ଦରଦନା ନାଶିଣ
ସଖି ଚନ୍ଦ୍ରାନନା ମାରଚନାଘନା
ଲେଡ଼େ ଶ୍ୟାମଘନ ପରଶ । ୧ ।

ଚେଳନ୍ତୁ ପଲଙ୍କ ଧରି କରି ଅଙ୍କ
ଜୀବନ ନ କରେ ସ୍ମରଣ
କଳା ଦରବକୁ ପଠାଇ ଦୂରକୁ
ବୋଲେ କୃଷ୍ଣ ଏକା ହରଷ । ୨ ।

ନକୁଞ୍ଜ ସଜାଇ ରଖିବ ମଜାଇ
ମୁଁ ଯାଇ ଗଞ୍ଜାଇ ତା' ରୋଷ
ରାଧାକୃଷ୍ଣ ଭଞ୍ଜ ମୋ ଆରତ ପୁଞ୍ଜ
ଫେଡ଼ିବା କେଶବ ମୋ ଦୋଷ । ୩ ।



୧୫-୮-୭୦

( ୨୪ )

ସଜ କଞ୍ଜ ଝଁସଏ ମାର
ମୋହନ ଲପନ ଉପମା ଚାର (ପଦ)

ବଧିକେ ଅଧିକ କ କହ୍ନବ ଧିକ
ଦୁଃଖ ଦେଖି ଜୀବ ଥିବାର
ଶୁଖିଛୁ ଅଧର ବରସ ଶ୍ରୀଧର
ଭୋଜନ ଶୟନ ବଦୂର । ୧ ।

ଧର ମୋର କର ଘଷିଲେ ଶ୍ରୀକର
ଜୀବନ ଚେଜବ ଏଥର
କେଶବ ଅଧୀର ବଲେକ ଭୂଧର
ପାଦପ ବେଦନ୍ତ ଅପାର । ୨ ।

କାଲ ସଖୀ କୁଞ୍ଜେ ମିଳବେ ନକୁଞ୍ଜେ
ଆସିଅଛୁ ଦେଇ ଉତ୍ତର
ବେନ ଦୁଃଖବଶି ମୂରଲୀ ଗବସି
ପରଶିବ ସୁଖ ମାଚର । ୩ ।



୧୫-୮-୬୦

( ୨୫ )

ଆଜନ୍ଦନ ସୂଦନ
ଯାନ ପାଇଁ ନାଶ ଗଲା ଦୁର୍ଦ୍ଦିନ (ଘୋଷା)

ପୂର୍ବ ଦଶୀରେ ମୋହନ ଦକ୍ଷିରେ
ପଶ୍ଚିମେ ରାଧିକା ଦର୍ଶନ । ୧ ।

ରାଧା ତେଜ ମାନ ପୂର୍ବ ଗୁମାନ
ପୂଜ ଆସିଲାଣି ମୋହନ । ୨ ।

କୁଞ୍ଜ ପଞ୍ଜରରେ ପ୍ରେମ ମଞ୍ଜରରେ
ରଞ୍ଜିବା ରାଧା କୃଷ୍ଣ ମନ । ୩ ।

ଆସ ଗୋ ରାଧିକେ ଉପମା ଅଧିକେ
ମୋହନ କରିବା ଅର୍ଚ୍ଚନ । ୪ ।

ଆସ ରାଧା-ଧବ ଆସ ହେ ମାଧବ
ବେନଜନ କରୁ ବନ୍ଦନ । ୫ ।



୧୭-୮-୭୦

( ୨୭ )

ଦାସୀର ଦୋଷ,
ନ ଧର ନ ଧର ହେ ପୀତବାସ
ମୁଁ କଣା କଙ୍କର ତୁମର ଅଙ୍କର ପଙ୍କଜଲୋଚନ ସୁବେଶ (ପଦ)

ପତିତ ଜନେ ଅଜ୍ଞାତରେ ତାରିଛ
କଥିତ ପୁରାଣେ ବିଶେଷ
ଅତି ଆରତରେ ଦାସ ପୁରତରେ
ବ୍ୟଥିତ ଦିଅ ହେ ଆଶିଷ । ୧ ।

ଯମୁନା କୂଳ ଦୁକୂଳ ଶ୍ରେଷ୍ଠ ସ୍ଥଳ
ଗୋପୀକୁଳ ରାସ ପରଶ
ଦଳ ଦଳ ହୋଇ ଜନେ ଝାସ ଦେବୁ
ଫଳ ନାସ୍ତି ହତ୍ୟା ଅବଶ୍ୟ । ୨ ।

ଧରି ବେଣ ପାଦ ଆହେ ଗୂଢ଼ପଦ
କ୍ଷମା ମାଗେ ତେଜ ବିରସ
କି ଦରବ ଦେଇ ପୂଜିବୁ ଗୋପାଳୀ
ଜୀବନ ତୁମ୍ଭର ସର୍ବସ୍ୱ । ୩ ।



୧୭-୮-୭୦

( ୨୭ )

ଆହା ମୋର ଗଣୁ ରତନ
ତୋ ବିନା ନବିନା ଜୀବନ ବନ (ପଦ)

ହୀରକରଦନା ସରୋଜବଦନା
ତେଜନ୍ତୁ ମନରୁ ମାନ ଗୁମାନ । ୧ ।

ବିରହେ ଆହାର ବିହାର ତ ହାର
ମାନ କଲେ ମୋତେ ଛନ୍ଦ ଉଛନ୍ଦ । ୨ ।

ତୁ ତ ରସବତୀ ପାଖୁଡ଼ା ସେବତୀ
ଚକ୍ରବର୍ତ୍ତୀ ପାଇଁ ନିର୍ଦ୍ଧନ ଧନ । ୩ ।

ଆସ ଆସ ରସାଳସା ମତ୍ତ ଭୂଷା
କୁଞ୍ଜେ ରଞ୍ଜାଇବା ଦିନ ସୁଦିନ । ୪ ।



୧୬-୮-୭୦

( ୨୮ )

ଝୁଲଅ ଗୋ, ଝୁଲଣ ଦୋଳ
କିଶୋର କିଶୋରୀ ଆଜ କୁଞ୍ଜେ ହେଲେ ମେଳ (ପଦ)

ମାଳତୀ ତଗର ପୁଷ୍ପେ ଦିଅ ଆଣି ମାଳ । ୧ ।

କୁଞ୍ଜ ପସରା ମାଣିକ ମୋତିପୂରା ଥାଳ । ୨ ।

ବିଧାତା ଗଠନ ଦେଖି କେଡ଼େ ସମତୁଲ । ୩ ।

କୁସୁମ ଡୋରେ ବାନ୍ଧିବା ବେଣୀବାସ ଲୋଳ । ୪ ।

ଚନ୍ଦ୍ରାବଳୀ ପୁରି ବନ୍ଦ କିଶୋର ବାତୁଳ । ୫ ।

କିଶୋରୀ ଆଦେଶ ବିନା ଅଟେ ଆମ ମୂଳ । ୬ ।



୧୬-୮-୭୦

( ୨୯ )

ସଜନୀ ! ରଜନୀ ଆଜି କାଳ ହେଲି ରେ,
କେତେ କାନ୍ତ ପାଞ୍ଚିଥିଲି ରେ···(ପଦ)

ରଜନୀକର ଶୁକର ନିଶାକରମୁଖୀକର
କରୁଣା-କଣା-କିଙ୍କର ଦାସ ମଲିରେ । ୧ ।

ହରପର ହରବର ହରଣୀ ହୃଶା ଭୁ ହର
ହରଯୋଗ ଭଙ୍ଗି ମୋର ଏଢ଼ା ଥିଲା ରେ । ୨ ।

ମାନଶୀ ଭୁଞ୍ଜ ଯାମିନୀ ଚୋର ବନା ଚନ୍ଦ୍ରାନନୀ
ଶୀତ ବାତ ପିକରୁତ ପିତା ହେଲା ରେ । ୩ ।

ରସାଣିଲା ହେମକାନ୍ତ ରସାଳସା ଚନ୍ତ ଚନ୍ତ
ରସା ତୋ ବନା ସୁରସା ହିଂସା କଲା ରେ । ୪ ।

ମାର ମାରଗଣ ବାଉ ନରତେ କେ ନର ସହୁ
ମାରଣ ଅତନୁ ଏତେ ଦଣ୍ଡ ଦେଲା ରେ । ୫ ।



୨-୯-୭୦

( ୩୦ )

ରାଧା ତଉପାଶ ଦୂତଏ ଦ୍ରବେଶ
ବେଳ ଦେଖି ପୁଷ୍ପ ସମସ୍ତ
ବେନ କର ଧରି ଗେଲ ପୁଣି କରି
ପୁଚ୍ଛନ୍ତି କାହିଁ କଶଳସ୍ତ ।

ରାଧିକେ, କଳିକା କେ କଲା ପୁଷ୍ପିତ,
ନବବାସ ଦେହେ    କେ ଦେଲା ସେନେହେ
ଦୂତିକୁଳ ହେଲୁ ମୋହିତ । ୧ ।

ଅଜ୍ଞାନ ତିମିର    କଲା ଅପହରଣ
ଜ୍ଞାନ ଦାନ କଏ ଅର୍ପିଲା
ଲାଜଭରା ମୁଖ    ଦେଖୁଛୁ ପ୍ରତ୍ୟକ୍ଷ
ହୋଳି ନାଳି ରଙ୍ଗ କେ ଦେଲା,
ରାଧିକେ, ନତମୁଖ ଦେଖି ବଦନ
ମନେହୁଏ ବ୍ରତେ    ରଖିଛ ଗୁପତେ
ପାଇଥିବା ଦାନ ସୁବର୍ଣ୍ଣ । ୨ ।

କର ଛୁଟି ଗୋପ    ରହେ ଦୂରବାର
ଗୁପତ ହୋଇଲା ପ୍ରକାଶ
ନବ ଉନ୍ମାଦନା    ପାଇଛୁ ନବୀନା
କଲେ ସଖିଏ ଉପହାସ ।
ରାଧିକେ, ସରମେ ନତମୁଖେ ବସି,
ସଖୀ କେଶ୍ବି ଭାଷି    ମାନ ଦଅ ନାଶି
ପ୍ରକାଶ କଥା ହସି ହସି । ୩ ।



୩-୯-୭୦

( ୩୧ )

ଭଣି ସଖୀ କଏ ଶୁଣ ରାଧିକେ
ତବ ତନୁ ଶୋଭା କହିବ ଥୋକେ । ୧ ।

ଶୁଣି ସୁଧାରସ ଲେପି ଲପନ
ବେନ ନେତ୍ର ଯାହା କଲା ନିର୍ମାଣ । ୨ ।

ବିହି ଧନ୍ୟ ବୋଲି ବୋଲିବା ଯାହା
ବହିଲା ସୁଫଳ ଫଳିଲା ତାହା । ୩ ।

ମାର ବିଜେ ମର୍ତ୍ତ୍ୟେ ଜ୍ଞାତ ବିଧାତ
ରାବଣ ସୋଦର କର୍ଣ୍ଣ ଦୂରିତ । ୪ ।

ବସାଇଲା ଶୁଭକର୍ମ ସଙ୍କେତ
ରୋମାବଳୀ ଚୂତ ପଲ୍ଲବ ପୂତ । ୫ ।

ନାରିକେଳ ଅଭାବକୁ ବିଲୋକ
ଗୁବାକ ଉପରେ ରଖିଲା ଯୋଖି । ୬ ।

ମାର ପାଇଁ ସିଂହାସନ ନିର୍ମାଣ
ନିତମ୍ବ ବର୍ତ୍ତୁଳ କଟି ପ୍ରମାଣ । ୭ ।

ପଙ୍କଜ ଚମ୍ପକ ମାଳ କୁମୁଦ
କୁସୁମ କହ୍ଲାର ଶତ ପ୍ରମୋଦ । ୮ ।

ରମ୍ଭା ତରୁ ଦର୍ପ ଭାଙ୍ଗି ବିଧାତା
ଓଲଟ ପ୍ରକାରେ କଲା ସାଇତା । ୯ ।

ପଙ୍କଜ ବନ ଉଜାଡ଼ିବା ପାଇଁ
ରସିକ ଦନ୍ତୀର ହୁଅ ଆଶାୟୀ । ୧୦ ।



୩-୯-୭୦

( ୩୨ )

ଗୋବିନ୍ଦ ପଦାରବିନ୍ଦେ, ବନ୍ଦେ ମନ ସଦା ବନ୍ଦେ (ଘୋଷା)

ଛନ୍ଦାଚରଣ ଶରଣ, ବିନା କେ ଅଛି କାରଣ
ମଜ୍ଜିଥାଏ ସଦା ସିନା ତାରଣ ମାରଣ ଧନ୍ଦେ । ୧ ।

ଗଣି ଗଣି ଦିନ ଯାଏ ଜୀବନ କେଣିକି ଧାଏଁ
ବାଟବଣା ଏଣୀ ପ୍ରାୟେ ପକାଏ ସଦା ଯେ ଦ୍ୱନ୍ଦେ । ୨ ।

ଆଜ ଯାହା ଦେଖ ତାହା କାଲି ହୁଏ ନୂଆ ନୂଆ
ଭଲ ସାଜନ୍ତି ଦୁନିଆ କଏ ହସେ କଏ କାନ୍ଦେ । ୩ ।

ବନ୍ଧା ପଦ୍ମମୁଖ ପାଦେ ଧନ୍ଦା ପାଏ ପରସାଦେ
ସୁଖ ଦୁଃଖ ପାରମୋଦେ ଜୀବନ ମରଣ ବାନ୍ଧେ । ୪ ।



୨୩-୯-୭୦

( ୩୩ )

ବରଷା ରାତି ଅନ୍ଧାର
କି ଥିବ ରସିକା ବର
ବରବର୍ଣ୍ଣିମ ମୋହର
ବର୍ତ୍ତି ଥିବ କି ଏବାର (ପଦ)

ଅଣୀଚ ଘନେ ଚପଳା
ଖେଳେ ଚମକବ ବାଳା
ନବ ବୟସୀ ଛଇଳା
ସନ୍ତ୍ୱକ ମାର ଶର ।୧।

ଝଟେଇବାକୁ ନିମିଷେ
ସଖୀକୁ ହେବ ବରଷେ
ରସାଣିଲି ହେମ ଝଣେ
କାନ୍ତ ଥିବ କି ପ୍ରିୟାର ।୨।

ବାସର ଝନ ଅସାର
ବାସ ହେବ ବନ,ଘୋର
ଝଧି ଯୋଗେ ସିନା ମୋର
ଭେଟ ହେବ ଘନ ଗୀର ।୩।



୧୧-୧-୭୧

( ୩୪ )

ବ୍ରଜରାଜସୁନ୍ଦର

ଗୋପ ବାନ୍ଧବ ମୁରଲି କିଶୋର (ଘୋଷା)

ଜଗତ-ଜନ-ବନ୍ଦନ ରମଣୀୟ
ପୂଜିତ ଚନ୍ଦ୍ର ପୁରନ୍ଦର,
ବ୍ରହ୍ମାଶଙ୍କରଙ୍କୁ ପାଦ ଗୂଢ଼ପଦ
ଇନ୍ଦ୍ର ବାଜେ ନେଲ ମନ୍ଦର । ୧ ।

ପୂତନା ଯାତନା ଅଘାବକା ତୃଣା
ନାଶିଲ କ୍ଷଣକେ ମାତର
ବାନ୍ଧିତ ବସ୍ତୁସେ ନନ୍ଦ ଯେ ଅମୃତ
ଗୋପାଳେ କି ହେବ ଗୋଚର । ୨ ।

ବ୍ରଜ ରାଜ ତନୟା ରଜ ସରୋଜ-
ମୁଖୀ ଭଜେ ନନ୍ଦ ପସୁର
ଗୋପାଳ ବାଳକ ମେଳେ କି ନାହାନ୍ତି
ମନ୍ତ୍ରରେ କରିଛ ହୃଦର । ୩ ।

ଏତକ ମାଗୁଣି କତକ ନେବହେ
କରନ୍ତ ପାପଜ ଅସୁର
ପଦ କଞ୍ଜେ ସଞ୍ଜେ ସକାଳେ ବନନ୍ତ
ଘନ ଶ୍ୟାମ ନନ୍ଦ ଜୁହାର । ୪ ।



୧୧ । ୧ । ୭୧

ଆକାଶବାଣୀ ସୌଜନ୍ୟରୁ—ଶ୍ରୀ ନରୋତ୍ତମ ସାହୁ

( ୩୫ )

ଆନନ୍ଦକନ୍ଦ ପରମାନନ୍ଦ
ନନ୍ଦ ନନ୍ଦନ କିଶୋର ଗୋବିନ୍ଦ···(ପଦ)

ଦିବସ ରଜନୀ          ତୁମ ନାମ ଗୁଣି
ଅବସ୍ଥା ଦେଖୁଛୁ ହେଲଣି ମନ୍ଦ
କୃଷ୍ଣ କପଟିଆ          ହେ ନଟକୁଟିଆ
ବାହାରେ ଚକ୍‌କଣ ଭିତରେ ଛନ୍ଦ । ୧ ।

ଜଗତର ଦୁଃଖ          ସବୁ ଶିରେ ରଖ
ଯେତେ ଦୁଃଖ ସବୁ ମୋର ପସନ୍ଦ
ସୁଖପାଇଁ ଦିନେ          ନ କରିବ ଅଳି
ତିନବାର ସତ୍ୟ ନ କରେ ଦ୍ୱନ୍ଦ ।·୨ ।

ଯାଦବ ସାଧବ          ମୂରତି ମାଧବ
ନୀଳକନ୍ଦରରେ ମନ ଅଳନ୍ଦ
ତବ ନାମ ଗନ୍ଧ          କଳୁଷ ବିଛନ୍ଦ
ଜରା ମୃତ୍ୟୁ ଦୁଃଖ ଦେଉ ଆନନ୍ଦ । ୩ ।

ଦୁଃଖ ଗଲାପର          ଶୂନ୍ୟ ପ୍ରଭୁ କର
ସୁଖ ନୁହେ ମୋର ମନ ପସନ୍ଦ
ଜଗତ ଜୀବନ          ଦୁଃଖ ହେବ କ୍ଷୀଣ
ଦିଅ ଆନେ ପ୍ରଭୁ ସୁମକରନ୍ଦ । ୪ ।



୨୨-୧-୭୧

( ୩୭ )

ଦୁଃଖୀଜନ ବାନ୍ଧବ ହରି
କରି-ଦୁଃଖ-ନାଶକାରୀ ଶ୍ରୀହରି···(ପଦ)

ହରି ହରଣୀର ଦୁଃଖ ହେ ଶ୍ରୀଧର
ଚକ୍ର ପେଶି ନକ୍ରେ ଦେଲ ତ ମାରି
ବଧ କଲ ବ୍ୟାଧ ଆହେ ଚକ୍ରାୟୁଧ
ଗୋଟିଏ ମାରିଲ ଗୋଟିଏ ତାରି । ୧ ।

ଦ୍ରଉପଦୀ ଦୁଃଖ ହେଲ ତ ଅସୁଖ
ଆହେ ପଦ୍ମମୁଖ ତୁମ୍ଭ କେ ସରି
କାହାକୁ ବିମୁଖ ଦିଅ ପୁଣି ସୁଖ
କାହାକୁ କହିଲେ ରଗିବ ଭାରି । ୨ ।

ଦୁଃଖ ହେଲେ ଭାରି ଆହେ ଚକ୍ରଧାରୀ
ମୁଖରେ ଗୋବିନ୍ଦ ନାମ ଉଚ୍ଚାରି
ଥରେ ନାମ ଧରି ହୋଇଯାନ୍ତି ପାରି
ମୋ ବେଳକୁ କମ୍ପା ତୁମର ଭାରି । ୩ ।

ନ ମାଗଇ ସୁଖ ମିତ୍ର ପଛେ ଦୁଃଖ
ତୁମ ହାତୁ ଦିଅ ପାଇବି ଶିରୀ
ଶ୍ରୀହରି ଶ୍ରୀହରି ଜପି ହେବି ପାରି
ନାମ ଧରି ଯାଉ ଜୀବନ ତରି । ୪ ।



୨୩-୧-୭୧

( ୩୭ )

ଦେଖ ମିତଣୀ ଗୋ, ଶିଖଣ୍ଡଚୂଳଆ ଅଳ
ଯମୁନା କୂଳରେ ସ୍ନାହାନ ବେଳରେ ଆସି ମିଳେ ଢଳ ଢଳ (ପଦ)

ଗୋପାଳ ବାଳକ ଅଛନ୍ତି ଅନେକ
କଏ ଅଛୁ କାହ୍ନୁ ଭଳ
ଦେଖାଇ ଭେଳକ ଚଖାଇ ଅଳକ
ଆମ ମୁଖେ ଦେଲା କାଳ । ୧ ।

ବାସ ବେଶ କଲା ଦାସ ବନାଇଲା
କ ମନ୍ତ୍ର ଦେଲା ଛଳ
ଘର ଘରଣୀଏ ଫାନ୍ଦରେ ପଡ଼ିଲେ
ମନ୍ଦ ବାଟେ ଗଲେ ଢଳ । ୨ ।

ନନ୍ଦର ଦୁଲାଳ ଛନ୍ଦହୀନ ଦିଶେ
ଉପରକୁ ସୁନା ଭଳ
ଭିତରେ ପିତଳ ଭୁଞ୍ଚା ସୁନା ତୁଲ
ଫସାଇଲା ସବୁ ଆଳ । ୩ ।

କୁଞ୍ଜ ରାସ ରଙ୍ଗେ ନାଚ ନାଚ ସଙ୍ଗେ
ଢଙ୍ଗେ ଦିଏ ମନ୍ତ୍ର ଦଳ
ଭୁଆଳୀ ଯେତେକ ପୁରୁଷ ତେଜିଲେ
ଚନ୍ଦନ ଶାଶୁର ଗାଳ । ୪ ।

ବଇଁଶୀ ଶବଦ ହେଲ୍ଣିଚ ଗଦ
                    ଅପବାଦ ବଏ ଜାଳ
ତାର ଶ୍ରୀଚରଣେ ମତ ନତ ଭ୍ରମେ
                    ଦେବ ତନୁ ମୋର ଦଳ । ୫ ।



୩୦-୧-୭୧

( ୩୮ )

ଶ୍ୟାମଘନ, ନ ବଜାଅ ଆଜ ବଂଶୀସ୍ୱନ ହେ (ଘୋଷା)

ବୃଷଭାନୁ ଜେମା    ସୁବର୍ଣ୍ଣ ପ୍ରତିମା
ଗୁଆଳରତନ    ସମ ନୁହେ ରମା
ରମାରମଣ ହେ    ବପଘାତ ରମା
    ମାରେ ଶର ଘନ ଘନ ହେ । ୧ ।

ଘାଧିକେ ଘାଧିକେ    ଅଧିକୁ ଅଧିକେ
ଡବା ନଶି ଜ୍ଞାନ    ଚେଜ ଝନ ଡାକେ
ଗୋପ ସାଘ ଭଘ    ନନ୍ଦାର ପସଘ
    ପଘଭବେ ଦେବ ପ୍ରାଣ ହେ । ୨ ।

ବାଳ୍ପତ ବୟସ    କସ ପଞ୍ଚଭୁଷ
ମନ୍ତ୍ରର ସାଧିବା    କରୁଅଛୁ ବଶ
ଗୋପୀ ଜନ ମନ    ହର ହେ ଶ୍ରୀହର
    କିଣିଲଣି ସବୁ ମନ ହେ । ୩ ।

ଗୋପପୁରେ କେତେ ନାହାନ୍ତି ଗୋପାଳ
ତୁମ ପରି ଜଣେ ଖୋଜିଲେ ବିରଳ
କି ସାଧନା ଯେଣ ଆହେ ଆଦ୍ୟମୂଳ
ହେଲ ପରା ପରିଜନ । ୪ ।

ମୋହନ ହେ, ରାଧା କହୁଛି ଏତିକି
ନ ଯିବ ବଇଁଶୀ ସ୍ୱନ ତା' କେତିକି
କରିବେ ଗୁତିକି ତେଜିବ ପତିକି
ଦେବ ଅବା ଜୀବଦାନ ହେ । ୫ ।



୩୦-୧-୭୧

( ୩୯ )

ଆରେ ରସନିଧି,
ରସି କରି ପୁଣି କରୁ ଏ କି ବୁଦ୍ଧି (ପଦ)

ରଜନୀ ଦିବସ ତେଜି ତଳପ
ଉରେ ବାସ କରି ଦେଲୁ କଳପ
ମଧୂକ୍ଷଣେ ଅପସରି ସାଧି । ୧ ।

ଗମନାନ୍ତେ ତରୁ ଶାଖା ଶିଖେ
ଶିଖି କାନ୍ଦୁଁ କାଠୁ ତରୁ ବୁକେ
ପ୍ରୀତି ନତି କରି ହେଲୁ ବାଧା । ୨ ।

ସ୍ୱଗତ କଥାକୁ ମନେ ଘେନ
ଭାଷା ଦେଲୁ ରୋଷ ପ୍ରାଣଧନ
ହର ପର ପୁର ଦେଲୁ ଖେଦ । ୩ ।

ଦଇବ ଘଟଣ ତୋର ମୋର
ଏକ ଆତ୍ମା ବେନି ସିନା ଉର
ରସେ ମନ ଜାବ ଭୃଙ୍ଗ ସାଧ । ୪ ।

ଜାରତି ରହିବ ମରତରେ
ରସିକା ପାଇଁକି ରସି ମରେ
ପାରୁଛି ରସିକା ଫାଶ ଫାନ୍ଦ । ୫ ।



୧୦-୨-୬୧

( ୪୦ )

ରାଗ—ରସକୁଲ୍ୟା

କନକ ଗୋରାଙ୍କୁ ରସିକ ଭଣି
ଖମଣିବଦନା ଶୁଣ ମୋ ବାଣୀ
ଗତ ସ୍ନେହ କପାଁ କରୁଛୁ ଦୂର
ଘନକେଶୀ ମୋତେ ନ କର ପର
ନବଯଉବନୀ ମାର ଯେ,
ଚତୁର ଉରଜ ଶରେ ମରୁଅଛୁ ଚତୁରୀ ମୋତେ ତୁ ତାର ଯେ । ୧ ।

ଛଇଳଗମନୀ ଏ ଘନ କାଳ
ଯଉବନେ କାଳ କାମ ପ୍ରବଳ
ଝୁରିବ ସିନା ତୋ ବିନା ନବନା
ନ ସହିବ ଦବାରଜନୀ ସୁନା
ଟାକ ଥକ ଦେହ ଭରି
ଠାବ ଦେଇ ଜବାଧରୀ ସ୍ପୀତ୍ଯସନେ ଉରଜ ଆସନେ ଧରି । ୨ ।

ଡାକେ ବନେ ନୀଳକଣ୍ଠ ସାନନ୍ଦେ
ଢଳ ନାଚ ନୀଳ ଜମୂତ ବନ୍ଦେ
ନବ ପ୍ରୀତି ଗୃହ ବେପିଛୁ ସ୍ମର
ତନ୍ୱିଙ୍କ ପ୍ରଥମ ଆଷାଢ଼ ମାର
ଥାପି ମାରତି କ ଭଙ୍ଗି,
ଦର୍ପକ ଦର୍ପ ହରଣ କର ମୋର ସୁକୁମାରୀ ମନ ଭୃଙ୍ଗୀ ଯେ । ୩ ।

ଧରା ମଣ୍ଡନା ଧୀରା ସୁଧା ମୁଖୀ
ନତ ଉରେ ଦିଅ ସୁଧା ପରଷି
ପରଜନେ କର ଆଦର ସିନା
ଫଗୁଆ କରନ୍ତ ନବ ନବନା
ବର ବାର ବେନ ପୁର,
ଭ୍ରୂର କାମ ଦଣ୍ଡ ମାର ପଞ୍ଚଶର ଭରମେ ପୀଡ଼େ ଶରୀର । ୪ ।

ମାର ଭୂଷା କର ରଖିଛୁ ଖୋଷା
ଯୋଷାବର ମୁନିଜନଙ୍କୁ ଭୂଷା
ରସି ରସିକା ନ କର ନିରାଶ
ଲବଣ୍ୟନିଧି ସୁଅଙ୍ଗୀ ଶିରୀଷ
ବସ ଅଙ୍କେ ରସି ରାମା
ଶଶୀମୁଖୀ ରଙ୍କନିଧି ମୃଗନେତ୍ରୀ ତୋ ପାଇଁ ଭୁଲୁ ଉପମା । ୫

ସତତ ତୋ ସେବା କରିବ ଧନ୍ୟା
ଷୋଡ଼ଶୀ ନାଶିବ ମାର ମୂର୍ଦ୍ଧନ୍ୟା
ହରିବ ବାଧା ସୁଧା ମୁଖ ଦେଖି
କ୍ଷିତିରେ ଇନ୍ଦ୍ର ପଦେ ହେବ ଲେଖି
କ୍ଷଣେ ଲକ୍ଷଣ ନ ତେଜ,
କ୍ଷୁଭିତ ପରାଣେ ଆଶା ସଞ୍ଚାରିବ ମୁଖପଦ୍ମ ସୁଧା ହେଜ । ୬



୧୦-୬-୭୧

( ୪୧ )

ମଧୂକାଳ ଦେଖି କେ ମଧୂମତ୍ତା
ବିଧୂମୁଖୀ ଯେଶେ ପୂରୁଷ କନ୍ତି
ବିଧୂର ହେଲା ମୋ ବଧୂଳି ହାର
ବନ୍ଧୁ ଦୂରେ ରହି କି ଅବସର
କହିବୁ ସନ୍ଦେଶ,
କାନ୍ତ ମୋ ଆସିବେ ତେଜି ବିଦେଶ । ୧ ।

ଏକାଳେ କାନନ ହେଲାଣି ସ୍ମର
ବନପ୍ରିୟ ବନେ ସାଙ୍ଗ ତାହାର
କେତକୀ କଣ୍ଟକ ଦୁର୍ଗରେ ଲୁଚି
କଣ୍ଠ ଧନ ଗତ କପଟ ବଂଚି
ନବ ଗୃହ କରି
ଅବା ବିହରନ୍ତି ଧବା ଶବସ୍ତ । ୨ ।

ବକୁଳ ଆକୁଳ ଦେଲାଣି ଯେତେ
ଅଶୋକ ସାଧୁଛି ଶୋକ ଜନତେ
ମଲ୍ଲୀହାର ପାଇଁ ରେ ମଧୁ ମଳି
ସରୋରୁହ ଦେଖ ଦୁଃଖରେ ଠେଲି
ମଧୁପ ସାଙ୍ଗରେ,
ମଧୂକାଳ କାଟେ କେତେ ରଂଗରେ । ୩ ।

ଚମ୍ପା କଳକା ଏ ଶମ୍ପା ତେଜରେ
କମ୍ପାଉଛି ତନୁ ଶରବ୍ୟାଜରେ
କୁରୁବକ ପୀଡ଼ା ଦିଅଇ ଯାହା
ସେ ସିନା ବଇଦ ତାରବେ ତାହା
ଚଞ୍ଚଳ ଚଳବୁ
ଚନ୍ଦ୍ରବଦନ ସଦନେ ଆଣିବୁ । ୪ ।



୧୧-୧-୭୧

( ୪୨ )

ତିଥିଯୋଗରେ ସଖୀ ଲେଖୁଛୁ ଭାଷା
ପ୍ରତାପ ଦେବ ବୋଲ ଭାଷିଲୁ ଭୂଷା ଯେ
ଦ୍ୱିତୀୟା ଚନ୍ଦ୍ର ତନୁ ଲୁଣ୍ଠଇ କାନ୍ତି
ତୃତୀୟ ନେଇ ଶର ମାରଇ ଦହି ଯେ···( ୧ )

ଚତୁର୍ଥୀରୁ ଗଣି ଏକ କାଟି ଦେଇ
ପଞ୍ଚମ ବାଣରେ ହୁଅଇ ଦହ୍ୱଜ ଯେ
ଷଷ୍ଠ ଋତୁ ମଧ୍ୟେ ଋତୁରାଜ ସାର
ସପ୍ତମ ଏକ ଗଣି ଚଢ଼ିଛୁ ଶିର ଯେ ( ୨ )

ଅଷ୍ଟମ ଅଙ୍ଗଯୋଗ ଗତ ଅତନୁ
ନବରଙ୍ଗ ଦିଏ ମଳୟେ ସୁତନୁ ଯେ
ଦଶଦିଗେ ଶର ଦେଲଣି ତ ବନ୍ଧ
ଏକାଦଶୀ ବ୍ରତ ମୋ ହେବକି ସିଦ୍ଧି ଯେ ( ୩ )

ଦ୍ୱାଦଶ ବେଦନପୁର ଶୋଷ୍ୱ ଭଣ୍ଡାର
ତ୍ରୟୋଦଶ ଦିବସ ହେଲୁ ଅନ୍ତର
ଚତୁର ଦଶନ ଝରେ ଲୁଚି ଛପି
ଅମାବାସ୍ୟା ଡର ସତ୍ତ୍ୱ କି ଉପେକ୍ଷି ଯେ ( ୪ )

ସ୍ୱକାଶଶୀ ଦିଶେ ନଭେ ସୁସଜ୍ଜିତ
କାସମୁକ୍ତ ଉରଜେ ଅତନୁ ଜିତ ଯେ
ଧରାଧୀଶ ମଣ୍ଡନା ମଣ୍ଡି ମୋ ପୂର
ଅଧରାମୃତ ଦାନେ ନାଶ ଅଧୀର ଯେ । ୫ ।



୧୨-୨-୭୧

( ୪୩ )

ମେଷ କାଳ ସଖୀ ନଦାଘ ପ୍ରବଳ
ବୃଷ ପଣ୍ଡ ବଳ ବଢ଼ଇ ଅନଳ
ମିଥୁନ ଉସରେ ସରଗ ବ୍ୟାହତ
କର୍କଟ ପାଇଁକ ବରଷ୍ଟା ସ୍ୱାଗତ ଯେ । ୧ ।

ସିଂହ ଶତ ବଳ ଥିଲେ ଅବା କେତେ
କନ୍ୟା ପାଶ ଲେଶ ଅଲୋଡ଼ା ଯୁକତେ
ତୁଳ ବଟେବକରେ ସତ ବା ଅଳକ
ବୃଶ୍ଚିକ ଶିରରେ ହୋଇବ ଘାତକ ଯେ । ୨ ।

ଧନୁ ତେଜ ହର ଯର ତନୁ ଜଳେ
ମକର ପଣ୍ଡରେ ଲୋଟଇ ଭୂତଳେ ।
କୁମ୍ଭସ୍ତନା ତେଜ ବାଣ୍ଡଦ ରଜନୀ
ମୀନକେତନ ଚେତନା ହେବ ପୁଣି ଯେ । ୩ ।



୧୨-୨-୭୧

( ୪୪ )

ରସିକା ଏକ ଲେଖେ ଷୋଡ଼ଶୀ ପାଶ
ସନ୍ଦେଶ ଦେଲ ଏ ନ କର ନରାଶ ଯେ
ଷଡ଼ ଋତୁ ମଧ୍ୟେ ଋତୁ ରାଜ ସାର
ତଥା ତ୍ରିଭୁବନେ ଭୁଷି ଗଳାହାର ଯେ । ୧ ।

ବେନ ମଦର ଛନ୍ଦରୁ ମାର ଫାଶ
ବେନ ନେତ୍ର ବନ୍ଧ କରି ନାଶ୍ୱ କ୍ଷଣ ଯେ
ଏକ ପଦ୍ମେ ଏକ କୁମୁଦ ଫୁଟାଇ
ତ୍ରିଭୁବନଶୋଷି ରସିକୁ ଦପାଇ ଯେ । ୨ ।

କେତକୀ ସୁଦେହା ଅଶୋକ ଅଙ୍ଗୁଳ
ବେନ କରେ ବେନ କର ଢଅ ଝାଳ ଯେ
ପଞ୍ଚମ ତାନେ କୋକିଳ କରେ ସ୍ତୁତ
ପଞ୍ଚଶର ଅନଙ୍ଗ ମାରେ ନରତ ଯେ । ୩ ।

ଚତୁର୍ଦ୍ଦଶ ପୁର ମଣ୍ଡନା ଅଙ୍ଗନା
ଷୋଡ଼ଶ କଳା ପୂର୍ଣ୍ଣ ଚନ୍ଦ୍ର ବଦନା ଯେ
ବତିଶ ଲକ୍ଷଣେ ଯୁକ୍ତା ସୁମୋହନୀ
ଚଉଷଠି ବନ୍ଧେ କାମ ତୋଷ ଦାମା ଯେ । ୪ ।

ଦିବସେ ଚଉଶ ଘଟିକା ନ ତେଜ
ବାର ମାସ ନିଶି ଦିନ ଥିବ ଭଜ ଯେ
ରତନପୁଣାରେ ମିତ ଦେଇ ମନ
ତୋଷ ଭବେ ପ୍ରାପ୍ତ ହେବ ଇନ୍ଦ୍ରଭୂତି ଯେ । ୫ ।

୧୩-୨-୭୧

( ୪୫ )

ଅନା ଥରେ ମିତ, ଏ ତ କାଳଆ ଭୂତ (ପଦ)

ଶୟନ ନୟନ ଖୋଲି ନ ଦେଖେ ଗଣିବ ବୋଲି
ପାଦେ ମଲି ଗ୍ଳି ଗ୍ଳି ତୋତେ ମିଛ ମୋତେ ସତ । ୧ ।

ଇଚ୍ଛାସୁଖେ ନଦେ ଶୋଇ ଷାଠିଏ ପଉଟି ଖାଇ
କା ଦୁଃଖ ଦେଖଇ ନାହିଁ ସଂଗତେ ଭଗିଣୀ ଭ୍ରାତ । ୨ ।

ତଳ ଉଳ କ ସୁତଳ କଳା ନୟନ ଯୁଗଳ
ଚୁହୁଁ ଅଛୁ ଜଳ ଜଳ ସବୁ ହୁଅଇ ଅଜ୍ଞାତ । ୩ ।

ଅନାଥରେ ଦିଶେ ନାହିଁ ପଥରେ ପଥର ସେହି
ଭୁଞ୍ଜା ବୋଲେ ସବଗ୍ରାହୀ ଡାକ ମୋର ପରାହତ । ୪ ।

୧୩-୨-୭୧

( ୪୭ )

ଶିଖିଚୂଳିଆ, ଯାଏ ଢଳ ଢଳ ବନ ମାଳିଆଗୋ—(ପଦ)

କଳା ବରନ ଘନ, ଗୋପୀ-ହୃଦ-ଚନ୍ଦନ
ସଙ୍ଗତେ ସୁଭଦ୍ରା ବଳିଆ ଗୋ । ୧ ।

ଘନ ଗୁହାର ଜାଣି ବଜାଏ ବେଣୁ ପାଣି
ପତିତ ପାବନ ମେଳିଆ ଗୋ । ୨ ।

ଚେଜିଲ ସିଂହାସନ ସାଜିଲ ରଥେ ଯାନ
କଳୁଷ ନାଶିଲ କାଳିଆ ଗୋ । ୩ ।

ଦେଖ ମିଳଣି ଠାଣି କୋଟିଏ ମାର ଜିଣି
ସତେ ଏ ତ ଜାମଡାଳିଆ ଗୋ । ୪ ।

ଭକତ ମନ କିଣି ନଏ ମୋହନ ଠାଣି
ମୋ ହୃଦ ଚନ୍ଦନ ଥାଳିଆ ଗୋ । ୫ ।



୧୩-୨-୭୧

( ୪୭ )

ଘନ କାଳରେ,
ଘନଶ୍ୟାମ ନ ଅସିଲେ କାଳ ଏ କାଳରେ (ପଦ)

ମିଥୁନ ମାସେ ଆଶା ମିଥୁନ, ବୃଥା ମିଥ୍ୟା କହିଲେ ମୋହନ
ଏ ଘନ୍ତ ଅଘନ୍ତ ସଖୀ ଘେନ,
ଦକ୍ଷ ନୟନ ବପକ୍ଷ ମୁଖ୍ୟ ଅବେଳରେ । ୧ ।

ନବ ଜଳଦ ଚେଜେ ଅସାର, ରସ ନିରସ ହେଲା ଆଶାର
ଗଗ୍ର ଶୋଭ୍ର ମଣ୍ଡଳ ଅସାର,
ସାରସ ମୁଖ ନ ଦିଶେ କେ ଅଳ କୂଳରେ । ୨ ।

ନନ୍ଦନନ୍ଦନ ଋଷିବନ୍ଦନ ଗୋପ ଗୋପିକା ହୃଦ ଚନ୍ଦନ
ଇନ୍ଦ୍ର ବାଦେ ଟେକ ଗୋବର୍ଦ୍ଧନ,
ଛନ୍ଦା ଚରଣ ବନ୍ଧିଲେ ଛନ୍ଦ କ ଛଳରେ । ୩ ।

ଘନକୋଳେ ଦେଖରେ ସଜନୀ, ଚପଳା ଚମକା ଏ ରଜନୀ
ଶିଖି ଶିଖା ଦଶା ବଏ ଜାଣି
ବାମଦେବ ବାମ ହେଲା ବାମ ଛଇଳ ରେ । ୪ ।

ସଙ୍ଗ ସ୍ଥାନେ ମରଷ ସଂଗୀତ ଗାଏଦାଦ କୃଷ୍ଣ ବନା ଛଏ
ରହିଥାଉ ଧବା ଅନୁବ୍ରତ,
ବ୍ରତତ ଅତ ନନ୍ଦକ ହେଉ ନନ୍ଦବାଳରେ । ୫ ।

●

୧୪-୨-୬୧

( ୪୮ )

ଘନ କାଳେ ଘନଶ୍ୟାମ କାନ୍ତିକି ଚେଜିଲି
ଘନକୋଳେ ସୌଦାମିନୀ କରେ ଝଲ୍‌ବଲ୍
ତୁମ କଣ୍ଠ ଝନ ଗତ,
କି ବେଶେ ରସ କାଳରେ ବରଷ କହ ତ । ୧ ।

ଧାରଣୀରବଣ ଧାର ନୟନ ଅଂଧାର
ଧରାଧର ଶିରେ ଦେଲ କପାଇଁ ଶ୍ରୀଧର
ତୁମ ଅଧର-ଅମୃତ,
ଧାର ମୋ ଅଧରେ ଝଅ ଦାସୀକୁ ଅଚ୍ୟୁତ । ୨ ।

ଜରଜ ବେଦନା ଜରେ ଧରଛ କପର
କରଜ ନାରତ ଘ.ଟେ ଝଘାତ ଶ୍ରୀହର
ଅଘ ନାଶନ କି କର
କରତନ କର ମାର ମାରେ ପଞ୍ଚଶର । ୩ ।

କଳା ବଉଦ କଳ.ବରନ ଛଳେ ଆସି
ଆସିଲ ପରାଣ୍ୟେ କଳା କାହ୍ନୁ ପାଏ ଝଣି
ହସି ରାସ ଖେଳ ଯେତେ
ଚୈତନ ଝେଳେ ସ୍ୱପନ ଅଭୂତ ଯୁକତେ । ୪ ।

ନାକ ନାଗ ତଳେ ନାଗସ୍ତଣ ମୁଁ ନାଗସ୍ତ
ଗୋପ ଭୁବନେ ଗୋପିକା ଜଏ ମୋତେ ସର
ଭଣ୍ଡି ରଖିଲ ବା ଜଏ
ଭଣ୍ଡା ଭଣ୍ଡି ଖଣ୍ଡି ଆସ ପୂନ୍ତବ ପରାପ୍ତେ । ୫ ।

●

୧୪-୨-୭୧

( ୪୯ )

ଭଜରେ ମନ, ରାମ ରାମ ରମାରମଣ ଶ୍ୟାମ
କୋଟିଏ ମାର ସ' ପଦ ପରସ୍ପର ସ୍ମରଣ ଭୃଷି ଯା ଚରଣ (ପଦ)

ଜଳଚିରବାସୀ ପୂଜ କାଶୀବାସୀ ଯା ଚରଣେ କମଳାସନ
ଦେବ ପୁରନ୍ଦର ବନ୍ଦ ଯା ପଦ୍ମର ଆନନ୍ଦକନ୍ଦ ନନ୍ଦନନ୍ଦନ । ୧ ।

କେତେ କଳ୍ପ ଜପି ଜପି ଗୋପଟୋପୀ ଅଙ୍ଗସଙ୍ଗ କଲେ ଧାରଣ
ଅରଜୁନ ନାସ୍ତ ଅରଜ ବସ୍ତ୍ର କଢ଼ିଥିଲେ ଲଜ୍ଜା ବାରଣ । ୨ ।

ବଳେ ବଳୀ ଶିସ୍ତ ହର ତାସନାସ୍ତ ଦେଇ ସୁଗ୍ରୀ କଲେ ରାଜନ
ଲଙ୍କପତି ମାର ସୁରଣଙ୍କା ତାର ବଶ୍ୟସଣେ ବରପ୍ରଦାନ । ୩ ।

ଚନ୍ଦ ପେଷୀ ନନ୍ଦ ମାର ତାର କସ ହର ହରଣୀ ଦୁଃଖ ତମ
ମହା ବଳ ବଳ ଭଗିମା ସୁନ୍ଦରଣନ ଏ ବଇକୁଣ୍ଠ ଧାମ । ୪ ।

●

୧୫-୨-୭୧

( ୫୦ )

ରସିକା ମଣି, ମଣି ତୋ ସଙ୍ଗ ମାରଜଣି ରେ······(ପଦ)

ସୁକୁମାଗ୍ର ଚଳୁଗ୍ର ତୂଗ୍ର ଚଜ୍ଜଦପୁଗ୍ର
ପୂରିତ ଅଣିମା ସୁଠାଣିରେ । ୧ ।

ଦର୍ପ ଭୂ କନ୍ଦର୍ପର ପରଭୃଷି ଦେବର
ବର ବରନା ସୁନାଖଣି ରେ । ୨ ।

ଜରଜ ବେନ କର କରଜ କୁଷକର
କର ଉଷ୍ଣତ ମନ ଜାଣି ରେ । ୩ ।

ବଦନେ କରବାସ ବାସ କର ନବଣ
ଗ୍ରସ ରସ ରସିକା ପୁଣି ରେ । ୪ ।

ଦେବପୂର ମରତେ ରତେ ପାଇବ ସତେ
ଶତେ ଅତନୁ ଶର ହାଣି ରେ । ୫ ।



( ୫୧ )

ଅରେ କୃଷ୍ଣ କେଣିକ ଯାଉ,
ତୋର ବନା ପ୍ରାଣ ରହିବ କାହୁଁ ···(ପଦ)

ଗିରି ଗୋବର୍ଦ୍ଧନ କରେ କେ ଧାରଣ
କରି ଗୋପପ୍ରାଣ ରଖିବ ଆଉ
ବନ ଦାବାନଳ ହୋଇଲେ ପ୍ରବଳ
ଅଉ କେ ଗାଳିବ ଆମର ଦାଉ । ୧ ।

ବକା ଅଘାସୁର ଶକଟା ଆବର
ଦୁଃଖ ଯେତେ ଦେଲେ କେତେ କେ କହୁ
ତୋ କୁଟ କପଟ କରିଲୁ ଆଜଟ
ଏବେ କମା ଦୂର ସଇଜ ଧାଉଁ । ୨ ।

ମୋ ବେନ ନୟନ ପିତୁଳା ସମାନ
ଅନ୍ଧର ଲଉଡ଼ି ଟିକେ ନ ରହୁଁ
ଦଶମାସ ଧରି କେତେ ଟେଲ୍ କରି
ବଢ଼ାଇଲା ଏବେ ଦୟା ନ ବହୁ । ୩ ।

ଏବେ ହେଲ ପର ଆରେ ମୋ କୁମର
ଯାଉ ଯେବେ ମୋର ପ୍ରାଣ ନ ଥାଉ
ଘନଶ୍ୟାମ ପଦ ଲେପ ହେବ ଯେବେ
ତୋତେ ନେବା ଲୋକ ନରକ ପାଉ । ୪ ।

୭-୩-୭୧

( ୫୨ )

ରସିକା ବନା ମନ ଛନ ଛନ ରେ···(ପଦ)

ଚନ୍ଦ୍ରାବଳୀ ବାଳୀ ସାଥିରେ ଥିଲେ ଆଳୀ
ସଙ୍କେତ ଦେଲୁ ସ୍ବପ୍ନଁ ଘନ ଘନ ରେ । ୧ ।

ସରୁ କଟି ପ୍ରକଟି ଝୀନ ଶାଢୀ ଆକଟି
ଗୁପତେ ରଖିଛୁ ବର୍ଦ୍ଧନ ଧନ ରେ । ୨ ।

ସଞ୍ଜ କଞ୍ଜ ଲପମା ଅଞ୍ଜନ ରେଖା ଧମା
ମୋହିବ ଇଶାନ ଇକ୍ଷଣ କ୍ଷଣରେ । ୩ ।

ବରଜ ଇନ୍ଦ୍ରପଦ ସେବ ମୋହିମା ପାଦ
ଫେଡ଼ିବ ଗେଲାଇ ଗୁମାନ ମାନ ରେ । ୪ ।

ଘନ କୋଳେ ଚପଳା ଘନ କାଳରେ ବାଳା
ବନ୍ଧୁନେ ମୋ ନୟନ ଥନ ଥନ ରେ । ୫ ।



୬-୩-୭୧

( ୫୩ )

ଘନ କାଳ ହେଲା କାଳକ, ମିତଣୀ ଗୋ
ଘନଶ୍ୟାମ କାହିଁ ଗଲେ ବାସି ପୁଷ୍ପ ମାଳକ···(ଘୋଷା)

ଗୋପଗୋପୀ କେତେ ଜପି ପ୍ରାପତ ଯେ ମାଣିକ
ଖଣ୍ଡ କଏ ମାରିନେଲା ସୁଖ ସବୁ କ୍ଷଣିକ । ୧ ।

ନଶିସାରା ଉଜାଗର ତା ପାଇଁ କ ସଜନୀ
ନଟବର କ ହୃଦର ଲଗାଇଲା ରଜନୀ । ୨ ।

କୁସୁମିତ ଶେଯ ସଜ ଭଙ୍ଗିଲେଣି କ ଦଶା
ଅପୂଟା ପ୍ରେମ କଳିକା ଦରଘା ଲୋକହସା । ୩ ।

ବାଜୁଛି ନାଟରା ଗୋପେ ରାଧାକୃଷ୍ଣ ଏକକ
ଜଣାଗଲା ଆଜ ସିନା ଏକଥାଟି ଅଳକ । ୪ ।

ଯମୁନା ପାଣିରେ ପଛେ ଡେଇବ ମୁଁ ଜୀବନ
ତାର ଭେଟ ଯଦ୍ଧ ଦୂର କହ କହ ବଦନ । ୫ ।



୬-୩-୬୧

( ୫୪ )

ମଧୁକାଳ ହେଲାରେ ମିତ
ମଧୁପ ଲୋଡ଼ଇ କୁସୁମ ଶତ । (ପଦ)

କୁରୁବକ ଅଶୋକ ବଲ୍ଲୀ
କର୍ଣ୍ଣିକାର କେତକୀ ମଲ୍ଲୀ
ମଦନ ସଦନ ବିରାଜ ଏମାନ
ସରଜୁ ଅଛନ୍ତି ବ୍ୟଥା ମୋ ଚିତ୍ତ (୧)

ରଜନୀ ସଜନୀ ଆମୋଦ
କଞ୍ଜ କୂଳ ପାଇଲେ ମୋଦ
ନିଶାକର କର ସଂପଦ ଆକର
ପ୍ରାପତ ପୁଣି ତ ମଳୟ ବାତ (୨)

ମନ୍ଦ ସୁତ ମନ୍ଦ ବହିତ
ସହକାରେ ପଞ୍ଚମରୁତ
ହରପର ସ୍ୱର କରେ ପରସ୍ୱର
ରତିକ ବସ୍ୱର ବୃଦ୍ଧି ମୋହତ (୩)

ଅଦ୍ଭୁ ରାଜ ମନ୍ତ୍ରୀ ହସିତ
ପାଦେ ନଶିବାତେ ତୋଷିତ
ବଦେ ସୁଧାଧାରୀ ଅବା ବସୁନ୍ଧରୀ
ପାଉଛୁ ବଧୂରୀ ଅଧରାମୃତ (୪)

ଦୁରେଇଲା ନୟନେ ଶ୍ୟାମଳ
ଆଳକୂଳେ ପର ଦୁକୂଳ
ମାର ପରବଳ ମାତ୍ର ପରବଳ
ଚରିବ ଅବେଳ ରତ୍ନ ମହତ (୫)



। ଶ-୭୧

( ୫୫ )

ଘନକାଳେ ଘନଶ୍ୟାମ ଅପଘନ
ନ ଦିଶିଲା ସଖୀ କାହ୍ନିକ ରେ···(ଘୋଷା)
କୂଟକପଟିଆ ସେ ନଟକୁଟିଆ
ବରଜଗୋପାଳୀ ଚିତ୍ତ ଲଂପଟିଆ
ହଟିଆ ନାଗର ବର ତ ଜଟିଆ
ଜଟିଗଲେ କାହ୍ନା ପାଇଁକ ରେ (୧)

ଶିଖଣ୍ଡି ଶିଖରେ ପୁଚ୍ଛ ଟେକ ଶିଖୀ
ମଣ୍ଡଳରେ ସୁଖୀ ନବଘନ ଦେଖି
ଦୋଷ କବା ଦେଖି କଲୁ ଧାରା ଦୁଃଖୀ
କ ପାଇବ ଖାବ ଥାଇକ ରେ (୨)

ଧାରଣିରାବଣ ଅନ୍ଧାର ରଜନୀ
ଧରା ପରେ ଧାରା ଭରେ ଦର ଜାଣି
ଅଧୀର ମୁଁ ପରା ବିଜନେ ସଜନୀ
ଦର ଥର ଥର ଚହଁକ ରେ (୩)

ଚପଳା ଚମକେ ଘୁଣ୍ଟି ଦକ ଦକ
ଚଉପାଶେ ଭେକ କରେ ମକମକ
ଯାଉଛି ଜୀବନ ରଖିବୁ ତ ରଖ
ଘନଶ୍ୟାମ ପାଶେ ଧାଇଁକ ରେ (୪)



୨୫ ୩-୭୧

ଆକାଶବାଣୀ ସୌଜନ୍ୟରୁ
(ଶିଳ୍ପୀ-କୁମାରୀ ପୂ: ବହୁଦାର)

( ୬୭ )

ସଜନୀରେ, ଆଜ ରଜନୀରେ
ତୋର ବିନା: ଚନ୍ଦ୍ରାନନୀ ବନ ଅବନୀରେ (ଘୋଷା)

କନ୍ଦର୍ପ ଦର୍ପହାରିଣୀ ମନୋହାରୀ
ଯୋଗୀ ଯୋଗ ଭଙ୍ଗି କୁଞ୍ଜ ଗାମିନୀରେ
କାମିନୀ କାମନା ବାସନା ସଙ୍ଗିନୀ
ରଙ୍ଗିନୀ ରଙ୍ଗ ଅଧର ଲପନୀରେ (୧)

ଅଙ୍କ ପଲଙ୍କେ ବାଙ୍କନେତ୍ରୀ ନିଃଶଙ୍କେ
ଢଳସି ତୁ ମାର ମାର ମୂର୍ଚ୍ଛନାରେ,
ଅଙ୍କଶୋଭା ରଙ୍କରଚନା ଆତଙ୍କ
ନାଶି ହସି ଯା ପଙ୍କଜ ଆନନାରେ (୨)

ଲାଜ ତେଜ ସଜ ଧରେ,ଜବଦନା
ବଦନ ବେଦନା ନାଶ ମୋ ଧନାରେ,
ଆସ ରାସେଶ୍ବରୀ ଦାସ ଯାଏ ସଶ
ହାଷ ସୁହାଷ ହସ ତୋଷ ଦାନାରେ (୩)

ରସାଳସା ହସା ତନୁ ମାର ଭୂଷା
ଯୋଷା ଋଷା ସାର ରସ ଭଙ୍ଗିମାରେ,
ଭସା ଆଡରୂଷା ଅମ୍ଭ ମନ ରସା
ଦରସା ଏ ରସା ରସିକା କୁ ମାନାରେ (୪)

ଜୀବ ଯିବ ଯିନା ଜୀବନୁଁ ନନ୍ଦନା
ଯେନ କଣ୍ଠ ଜନେ ମୀନନୟନାରେ
ଖଞ୍ଜସଟଭୃଙ୍ଗା ଗଞ୍ଜି ମାର ଦଶା
ରଞ୍ଜାଇ ମୋ ମନ ଭୃଙ୍ଗା ରଚନାରେ (୫)



୩୧-୪-୬୧

ଆକାଶବାଣୀ ସୌଜନ୍ୟରୁ
(ଶିଳ୍ପୀ—ଶ୍ରୀ ନରୋତ୍ତମ ସାହୁ)

( ୫୭ )

କାମିନୀରେ, ମାନ ମାନିନୀରେ,
ଦାନ କର ତନ ମନ ନ କର ମନାରେ···(ଘୋଷା)

ମଦନ ବିକାର କର ତୁ ଶୀକାର
କାରଣ କାହିଁରେ ମନା ତୁ ନ କର,
କର ପ୍ରତିକାର ତାର ଅବା ମାର
ରଜନୀ ସଜନୀ ସଜା ଏବେ ଅନାରେ । ୧ ।

ବିମ୍ବାଧରୀ ତୋର ବେଣୀ ଧରାଧର
ବସାକଣ୍ଠ କର କର ଫାଶେ ଧର
ପିଆଇ ଅଧର ଜବାଧରୀ ବର
ବରନା କରନା ବିମନା ନନ୍ଦନା ରେ । ୨ ।

ସ୍ମିତହାସୀ ହସି ଆସି ଅଙ୍କେ ବସି
ଋଷି ପରହାସି ଭ୍ରଷ୍ଟା ମଦାଳସୀ
ଭୁକ୍ଷେ ମାର ଅସି ତାର ତାରେ ନାଶି
ଗୁମାନ ମନରେ ସଜନୀ ଧରନାରେ । ୩ ।

କାମ ପାଶବାରେ ଭେଲା ହୁଅ ବାରେ
ବାରିଜ ବଦନୀ ତୁ ମୀନନୟନାରେ
ବାରେ କରଦାନ ମଦନ ସଦନ
ବାରଣଗମନା ମୋ'ସୁନା ତୁ ସିନା ରେ । ୪ ।



୫-୭-୭୧

( ୫୮ )

ମାନ ମାନ କଣୋଗ୍ଧି ମୋ ସୁନା ରେ
ବରବରନା ହେଲୁକ ବଣାରେ···(ପଦ)

ଝନା ଅନା ନନ୍ଦନା ଘନର ଛରଜନା
ଘନଶ୍ୟାମଙ୍କର କୋପ ବନ୍ଧନା ରେ । ୧ ।

କାମ କାମ ପ୍ରବୀଣା ବାମ କୁନ୍ଦରଦନା
ହେଉ ପଣ୍ଟକେ ନିନ୍ଦା ଭୂଷନା ରେ । ୨ ।

ହରି ହରି ବେଦନା ତାହାର ଭୁବ୍ର ସିନା
ତେଜ ମନରୁ ମାନ ସୁମନା ରେ । ୩ ।

ଜର ଜର ହୃଅନା ମୋ କଥା କର ଘେନା
କାଳିଆ ଲଭିବୁ ପୁଣି ସିନା ରେ । ୪ ।



୨୬-୭-୭୧

( ୫୯ )

ଆଉ ଦୁଃଖ କରନା, ରଙ୍କ ରଚମ୍ମ ଆତଙ୍କ ଧରନା (ପଦ)

ବରଜବାଳୀ ବନ୍ଧୁ ହଜ ସରୋଜ
ଲପନ ସ୍ୱପନ ବାସନା
ଚପନଚନସ୍ନା ଖଟରେ ଦେଖି ସଖୀ
ପୂରାଇବୁ ମନ କାମନା । ୧ ।

ଯା କାନ୍ତ ଝଲକେ କୋଟି ରତିପତି
ଭୁଲରେ ହୋଇବେ ଦମନା
ପୂର୍ବେ କି ତପ ଆଚରିଥିଲୁ ଗୋ
ତାପ ହନାଶିବୁ ସୁମନା । ୨ ।

ମଦନମୋହନ ମୁରଲୀ ନିଃସ୍ୱନ
ଜାଣକ ଗୋପାଳୀ ବେଦନା
ମୋହନମନ୍ତ୍ରର ମୋହୁଛି ଅନ୍ତର
ହାରନା ହୀରକ ରଦନା । ୩ ।

ସଜ ହୁଅ ଆଜ ଦେଖିଯିବା ବ୍ରଜ
ରାଜ ସୁତ ଚନ୍ଦ୍ରବଦନା
ଦର୍ଶନେ ପବସ କର ବେନ ନେସ
ନାମ ନତ ରଟୁ ରସନା । ୪ ।



୧୪-୧୧-୬୧

( ୭୦ )

ନନ୍ଦଘୁଟ କେଡ଼େ ରସିକା,
ବରଜ ଗୋପାଳୀ ହଅଁନ୍ତି ଧୋକା
ହଟେଇ ଜଟେଇ ନଟକୁଟ କରି
ମୁରଲୀ ବଜାଇ ଡାକେ ଗୋପିକା (ପଦ)

ଘର ଘର ଯାଇ ଦହି ସରଖାଇ
ଭଲଲୋକ ପରି ହଅନ୍ତି ଦେଖା
ବାଳୁତବୟସେ ହୁନ୍ଦର ଜାଣେ ସେ
ସୁନ୍ଦର କି ହଣେ ମନ୍ଦରଟେକା । ୧ ।

ବାଟ ଆଗୁଳଇ ପଣତ ଟାଣଇ
ବନ୍ଦ କରେ ଆମ ସବୁ ଜୀବକା
ବନେଇ ଚୂନେଇ ଅବାଟରେ ନେଇ
ନନ୍ଦା କରାଇଲା ଗୋପେ ଗୋପିକା । ୨ ।

ବାସ ଚୋରି କଲା ରାସ ରଚାଇଲା
ହସି କରାଇଲା ପରିଘୁରକା
ଦାସ ବନାଇଲା ପାଶକୁ ଟାଣିଲା
ଘନ ଭକ୍ଷେ ହେଲୁ ଅଭିସାରିକା । ୩ ।



୧୦-୧୨-୭୧

( ୭୧ )

ବାରେ ଶୁଣ ବାଣୀ, ରସିକା ଭଣି
ରେ ରମଣୀ, ତୁ ତ ନାଗର-ମଣିରେ (ପଦ)

ରସିକ-ସମାଜ-ତୋଷକ ହୀର
ରସାଣିଲ୍ଲ ହେମ କାନ୍ତ ପସର । ୧ ।

ଗଜଗମନାରେ ତୋର ଗତ୍ତକ
କଣି ନଏ ଜେତେ ଯୁବା ମତ୍ତକ । ୨

ଜବାଧର ଧୀର ଧର ମଣ୍ଡ୍ରନା
ଅଧର ପାଇଁକ ଥାଉ ଭଣ୍ଡ୍ରାନା । ୩ ।

କମଳ କଳକା ଶୋଭକୁ ଦଳ
ଉରଜ ସଂପୁଟ ଢଏ ଅର୍ଦ୍ଧୋଳ । ୪ ।

ଘେନ ଘନଶ୍ୟାମ ଗୀର ଚତୁଷ
ଚୋ ବନା ନବନା ଅନଙ୍ଗମାର । ୫ ।



୧୨-୧୨-୭୧

( ୭୨ )

କାହିଁପାଇଁ ଏତେ ମାନ,
ସଖୀ ଗୁର କଥାକୁ ରେ (ପଦ)
ମୋ ହୃଦୟ ମଣିହାର, ହୃଦୟ ଦୁଃଖପାସୋର
କୋଟି ତାର ଡର ଧୀର,
ମର ସମା ବ୍ୟଥାକୁ ରେ । ୧ ।

ବର ବରଷ ନେତ୍ରମ, ଥାଉ ସାରସ ଲପମ
ମାରକ ମାର ମୂର୍ଚ୍ଛନ,
ରସ ଗସ ପ୍ରଥାକୁ ରେ । ୨ ।

ବିରସ ବଦନ ଯାହା, ନିରସ ଅଙ୍କୁଶ ତାହା
ରସ ଜାହ୍ନବୀ ସୁଦେହା,
ନାଶ ମୋର ବ୍ୟଥାକୁ ରେ । ୩ ।

ଭେଜ ତେଜ ଅଭିମାନ, ଲାଜ ଦେତେକ ଗୁମାନ
ଘନଶ୍ୟାମେ ଦଅ ମନ,
ଟେକ ଟେକ ମଥାକୁ ରେ । ୪ ।



୧୨-୧୨-୭୧

( ୬୩ )

ନଟକୁଟ ବରଜ ଲଂପଟ
ପାଟ ଶାଢୀ ଆଜ୍ଞ ଟାଣ କାହିଁକ
ବାଟ ଚକ୍ରବୁଲ ଭ୍ରମ ପାଇଁ ଗଲ
ଶାଶୁଙ୍କ ଆକଟ ଜଣା ନାହିଁ କ (ପଦ)

ଦଣ୍ଡିଆ ନାଗର ସଟାବଟା କର
ଅଣ୍ଟା ଖୋଷା କଚ୍ଛ ନେବା ପଇଁକ
ଘୁଣ୍ଟିଆ ଲଗାଅ ଚଳସ ମଗାଅ
ଧନ କାହୁଁ ପାଇ ଜୀନା ମୂହିଁକ । ୧ ।

ଘାଟେ ବାଟେ ବସି ମୁରଲୀରେ ତୋଷି
ଶ୍ରେଷ୍ଟ କାରବାର ପାଇଁ ଧାଇଁକ
ଖଣ୍ଡ କାରବାର ପ୍ରକଟ ନ କର
ନକଟ ନ ଆସ ମାନ ମାଇଁକ । ୨ ।

ନନ୍ଦ ରାଜସୁତ ସୁଜନ ମହତ
ମନ୍ଦ କରମକୁ କର୍ମା ବୁହିଁକ
ଆଭଟ କରିଲେ ପ୍ରକଟ କରିବ
ଘୁଷ୍ଟ ଦେବେ ଅସି ମୋର ସାଇଁକ । ୩ ।

ବୋଲେ ଘନଶ୍ୟାମ ଶୁଣି ସେହୁ ନାମ
କଣ୍ଠାଏ ଜୀବନ ଚନ୍ଦ୍ରମୁହିଁକ
ଘାଣ୍ଟି ବେଦ ନାମ ବାଂଛି ସୁଧାପାନ
ମୋ ମନ ଅଳନ୍ଦ ଯାଇ ତହିଁକ । ୪ ।



୧୨-୧୨-୭୧

( ୭୪ )

ମୋ ଡ଼ାକ ଶୁଣ ବା ନ ଶୁଣ, ହେ ଜଗମୋହନ
ମୋ ପ୍ରଭୁ କେହୁ ନାହିଁ ଆନ ହେ ଜଗମୋହନ (ପଦ)

କେତେ ପାପୀ ତାପି କୁଳରେ
କେତେ ପାପୀ ତାପି କୁଳ
ତାରିଛ ବୋଲି ତ ଡାକୁଅଛୁ ନେତ
ମୋତେ ନାହିଁ ଥଳ କୂଳ । ୧ ।

ଅଜାମିଳ କଣ ଦେଲା ହେ ମୋହନ
ଅଜାମିଳ କଣ ଦେଲା ।
ତାକୁ ପାରକରି ଦେଲ ହେ ମୋହନ
ମୋ ବେଳକୁ କର୍ମା ହେଲା । ୨ ।

ନିତି ଦେଖେ ନୀଳ ଚନ୍ଦ ହେ ମୋହନ
ନିତି ଦେଖେ ନୀଳଚନ୍ଦ
ନନ୍ଦ ପାଇଁ ସିନା କରେ ଚନ୍ଦ ଥିଲା
ମୋ ବେଳକୁ ହେଲା ବନ୍ଦ । ୩ ।

ଗରୁଡ଼ ପଛରେ ଥାଇ ହେ ମୋହନ
ଗରୁଡ଼ ପଛରେ ଥାଇ
ଗାନକଲେ ଯଦି ଶୁଣିବ ମୋହନ
ଦେବ ପଛେ ଗାଳି ଦାଇ । ୪ ।

କି ସୁନ୍ଦର ଚକା ଆଖି ହେ ମୋହନ
କି ସୁନ୍ଦର ଚକା ଆଖି
ଘନଶ୍ୟାମ ମତି ଲାଖି ରହିବାରୁ
ଭ୍ରମର କୀରତି ଲେଖି । ୫ ।

ତୁମ ପାଶେ ଠାବ ଦିଅ ହେ ମୋହନ
ତୁମ ପାଶେ ଠାବ ଦିଅ
ତୁମ୍ଭ ଶ୍ରୀଚରଣେ ଜୀବନ କୁସୁମ
ଦେଉଛି ଆଦରେ ନିଅ । ୬ ।



୨୫-୧୨-୭୧

## ( ୭୫ )

କ କହିବ କୃଷ୍ଣ ଶଠକ ସାଧିକେ ଗୋ
ରାଧା ରାଧା ବୋଲି କରି ଯାହା ତାଙ୍କ ଗଣକ (ପଦ)

ଧରି ଧୀରେ କି ଅଧୀରେ    ମୋ କର ଶ୍ରୀକର
ବହିଲେ କହିବୁ ଦୂଷି    ମୋ ବେଦନା ସଞ୍ଚର । ୧ ।

ଅଶନ ହେଲି ବିଷ    ବ୍ୟସନେ ନାହିଁ ତୋଷ
ଏକା ଚତୁଷ ଲାଗି    ଦୁଃଖ ପାଏ ଅଶେଷ । ୨ ।

ବିଗତ ସ୍ନେହ ଦୂର    କଲି ନାଗରବର
ବରବର୍ଣ୍ଣିନୀ ଗୀର    ନ ଶୁଣଇ ବାର ବାର । ୩ ।

ଜୀବନ ସ୍ଥିର ମୋର    ଚଉଦିଶ ଅନ୍ଧାର
ଦିଶଇ ମୁଖ ତାର    ମାତରରେ ସଖୀସାର । ୪ ।

ପାଇବ ନନ୍ଦାଦାଉ    ଭେଟି ଜୀବନ ଥାଉ
ଘନଶ୍ୟାମ ବାଣୀ କି    ଦିବସ ରଜନୀ ଗାଉ । ୫ ।



୨୭-୧୨-୭୧

( ୬୬ )

ଆଜି ଅଭିମାନ, ବରଜବାଳୀ କାହ୍ନିଁକ
ଢଳୁ ଢଳୁ ତନୁ କ୍ଷୀଣ ଅଭିମାନୁ
ଗୋପୀନାଥ ପାଇବୁକ । ୧ ।

ପୂରୁଷ ମାତର କେ କରେ ଖାତର
ପରଜାପତି ସ୍ୱଭାବ
ପାଇ ଥରେ ଭାବ ଦେଇ ପରାଭବ
ଖୋଜି ନିତି ନବ ନବ । ୨ ।

ଏ ଚୋର ନଗର ନାହାନ୍ତି କ ଗୋଷ୍ଠ
ନାଗର ଯିବାକୁ ଧାଇଁ
ଜାଗର ଜଳାଇ ଉଜାଗରେ ରହି
ପୂଜନ୍ତୁ ପାଇବା ପାଇଁ । ୩ ।

ଘନଶ୍ୟାମ ଗିରି ଯେଉଁ ନାଗବର
ସେବା କର ଚିତ୍ତଚୋର
ମନରୁ ଗୁମାନ ଛେଜ ଛେଜ ଧନ
ମାନ ମୋ ବଚନ ଧୀର । ୪ ।



୨୭-୧୨-୭୧

( ୭୭ )

ଆସ ଫାଶ ବସ ଘମାରତନ,
ହସ ଭ୍ରଷ ଘସ ରଚ ଯତନ । ୧ ।

ଦାସ ଦାସ କଟେର ଝଂସକେତନ,
ବାସ ବାସେ ଦେଇ ଜଡ଼ା କେତନ । ୨ ।

ହ୍ବାସ ପର୍‌ହ୍ବାସ ଢଅ ବେତନ
ଢଷ ଦଶ ଢଶ ଢଶେ ପତନ । ୩ ।

ଫାଶ ନାଶ ଇସି ତେଜ ନୂତନ
ପାଶ ଆସି ଆଣ ଆଶା ଚେତନ । ୪ ।



୨୮-୧୨-୭୧

( ୭୮ )

ଏ ରଜନୀ !
ଢଣିବକ ମୋ ଜୀବନୀ ଧମୀରେ । ୦ ।

ମଧୁ ଋତୁ ଘନ୍ତ ଅଘନ୍ତ ଢଜନେ
ମଧୁପ ଢଟପରଢ ଅରଜନେ
ମଧୁକାଳ ଦୂତ ମଧୁର କୂଜନେ
ଢଣିବ କ ସୁହାସିନୀ । ୧ ।

ଚନ୍ଦନବନରୁ ସମୀର ପ୍ରସରି
ମନ୍ଦ ମନ୍ଦ ବହେ ଶ୍ଳେଷ କରି ଶିଷ
ସାରିବା ପାଇଁକ ତନୁ ନଏ ଚରି
ନ ଆସିଲ୍ ପ୍ରିୟା ଘେନା । ୨ ।

ବିରୁ ଚନ୍ଦ୍ରାତପ କୋଳରେ ଚନ୍ଦ୍ରମା
ବିକାଶ ପ୍ରକାଶ ସୁଷମା ଅଣିମା
ବିରହ ବେଦନା ଯାହା ହୁଏ ଜମା
ଦହିଲାଣି ଦେହ ହାଣି । ୩ ।

ମଲୁ ବୋଲି କହେ କାନନ ମଲ୍ଲିକା
କେତକୀ କୁସୁମ ସିନା ମାରି ଧକା
ରଜନୀଗନ୍ଧାର ଗନ୍ଧ କବ ଲେଖା
ପସନ୍ଦ ତ କରିବନି । ୪ ।

ଏ ରାତିରେ ରତି ପତିର ଗରବ
ଖରବ ପାଇଁକ ସେ ସିନା ସରବ
ସଜନୀ ଆସିଲେ ଏ ସଜା ହରିବ
ସୁକେଶୀ ରମ୍ବଦାପ୍ରିୟା । ୫ ।



୨୦-୧-୭୨

( ୭୯ )

ରଙ୍କ ନଧିରେ,
ବାଙ୍କନୟନ ଆତଙ୍କ କାଟି ଦିଅ ବୁଦ୍ଧିରେ । ୦ ।

ଶଙ୍କା ତେଜ ଶଙ୍କର-ବଇରୀ
ବଙ୍କା ବଙ୍କା ଶର ଦିଏ ମାରି
ରଙ୍କ ରତନ ଅଙ୍କେ ବିହରି
ମଧୁନିଶା ଯୋଷା ରସା ରସିଛୁ ବିଧିରେ । ୧ ।

ଚଖା ଗୋଷ ଅଧର ସୁଧୀର
ଲେଖା କୁଚ-କଳସରେ ଗିର
ଦେଖା ଦରହାସ ମୁଖ ଭର
ସଖା ତୁ ସିନା ମୋ ସୁନା ରସଦାସିଙ୍କି ରେ । ୨ ।

ଜବାଧର ଧୀର ଧରଶୋଣି
ଲୁହ ଅଧର ପାଇଁକ ଲେଖି
ଧରାଧର ବିନା ପରାଭବ
ନାମ କି ପାଇବୁ ମାର କରରେ ବଧି ରେ । ୩ ।

କର ଧରି କହୁଛି ନବିନା
ଦୂର କର ଗୁମାନ ରୁଷନା
ହର ମୋର ବଦନ ବେଦନା
ଜନା ପାଇବୁ ଅଚିନୁ ନାଶିବ ସନ୍ଧରେ । ୪ ।



୨୦-୧-୭୨

( ୨୦ )

ବାଟରେ ଲଗାଇଲି ନାଟ ସଜନୀ ଗୋ
ନଟକୂଟ ନଟବର କ ନ କଲି ହଟ ଗୋ···(ପଦ)

ଆଣ୍ଠେ ଧରି ବାସଫେର ଟାଣିଲି ଯେଉଁନେ ଖ୍ୱେର
ଜରଜ ସଂପୂଟ ଜାମା କରିଲି ଆକଟ । ୧ ।

ମୀର ଧରି ଫେରୁଥିଲି କର ଧରି ନେଲି ମେଲି
ସମ୍ଭାବନା ଯିବା ଦଶା ଦେଲି ପୀତ ପଟ । ୨ ।

କୁଞ୍ଜେ ସଙ୍ଗେ ଆସିବାକୁ କଞ୍ଜବଦନୀ ଭାଷାକୁ
ଦେଲେ ଗୁଡ଼ବ ଭୂଷାକୁ ଭୂଷିଲି ନପଟ । ୩ ।

ଭାଷା ଦେଇ ମୁକୁଳାଲି ଲୋକହସା କ ନ କଲି
ନ ଦଶଇ ବୁଦ୍ଧିବାଟ ହୁଏ ଛଟପଟ । ୪ ।



୨୨-୧-୭୨

( ୭୧ )

ଘନଶ୍ୟାମ ବିନା ଦିବସ ଅନ୍ଧାର
ବେଶଭୂଷା ଯୋଷା ତେଜିଲା ରେ (ଘୋଷା)

କି କଥାକୁ ସଖୀ ହେଲି ନିରିମାଖୀ
ବିନାଦୋଷେ ସିନା କୋପିଲୁ ସୁମୁଖୀ
ଭୁଜଙ୍ଗ ତନୁରେ ଅଙ୍ଗୁଳି ନିକ୍ଷେପି
ଚୁଚ୍ଛା ବିଷ ଜାଳେ ମଜ୍ଜିଲି ରେ । ୧ ।

କଦମ୍ବମୂଳରେ କାଳିନ୍ଦୀ କୂଳରେ
ନିରେଖି ଦେଖୁଛୁ ଗୋପାଳ ମେଳରେ
ତନୁ ଦିଶେନାହିଁ ହେଲି କି କାଳରେ
କୁଞ୍ଜ ପୁଞ୍ଜ ମଝି ଖୋଜିଲି ରେ । ୨ ।

ଦୂତିକା ଗୋ ଦଶ ଦିଶେ ଯାଏ ଦିଶି
ମୁଖଶୀର ଶୋଭା କିବା ଆସେ ହସି
ବାସଠଣା ବେଳ ହୋଇଲାଣି ବାସି
ମୋହନ ମନରେ ହଜିଲି ରେ । ୩ ।

ଅସନ ବ୍ୟସନ ଗରଳ ସମାନ
ମାନ ମାନ ସଖୀ ମନାଅ ମୋହନ
ଜ୍ୱରପାଇଁ ପଥ୍ୟ ବଇଁଶୀ ନିଃସ୍ୱନ
ପୁଣି ବୋଲି ଯାଇଁ ପୂଜିଲି ରେ । ୪ ।



୨୯-୧-୭୨

( ୭୨ )

ଭକ୍ତ ମାନସ ଶ୍ବରଣକାଶ
ମୁରଲୀ ମନୋହର ବନ୍ଦିତ ସୁରନର
ସଦା ରାଧା ହୃଦବସ୍ଥ । ୦ ।

ପୀତବସନ ତନୁ ମାନସେ ବସନ୍ତେ
ଶୀତାଂଶୁ ଶତ କନ୍ତ ମୁଖ ପଦ୍ମବନ୍ତେ
ଗୋପୀହୃଦ ମୋଦ ଧନ୍ୟାଶ । ୧ ।

ସର୍ଜିତ ଭବପୁର ଅର୍ଜିତ କୀର୍ତ୍ତିସାର
ବର୍ଜିତ ନ କର ମୁରଶ
ମାର୍ଜିତ ଦୋଷ ମୋର କର କରୁଣାକର
ଭବଭୟ ତାପ ସହାଶ । ୨ ।

ନନ୍ଦ ନନ୍ଦନ ଗୋପୀ-ହୃଦତଟ ଚନ୍ଦନ
ସୁର ନର ବନ୍ଦିତ ରାଧା ସୁଖ ବର୍ଦ୍ଧନ
ଦରଶନ ପଥେ ପଥସ୍ଥଶ । ୩ ।



୨୯-୧-୭୨

( ୭୩ )

ତେଜ ଆଜ ଭ୍ରୁ ମାନ ରେ, ରସାଳସା
ହେଜ ସେ କଥା ମାନ ରେ ।

ସଜ ସରୋଜମୁଖୀ ଆଜ କ ଦୋଷ ଦେଖି
ସଜା ଅଜାଣ୍ଡୁ ମଖୀ ମଜା କ ବାଞ୍ଛକାଷୀ
(ପଦ) ମାର ମାରୁଛି ଶର ଶରଣ ରଖ ମୋର
ମାରଣ ଦୋଷ ତୋର ହେବରେ ସ୍ୱମାବର
ମାରଣା ସାର ମାର ମାରଫଚ ଦେବାର
ନୁହେକ ଅବକ୍ସର ବକ୍ସର ଏବେ କର । ୧ ।

ଭୃଙ୍ଗା କ କଥା ଧରିରେ, ରହାଳସା
ଇଚ୍ଛା କ ବୃଥା ମାରିରେ ।
ହଜାଇଥିଲେ ଧନ ଖୋଜାଇ ଦେବ ଜାଣ
ମଜାଇ ମନପ୍ରାଣ ସାଜ କୁଞ୍ଜ ପଟନ
(ପଦ) ମାର ମାରୁଛି……ଏବେ କର । ୨ ।

ଆଶା ଭରସା ସିନାରେ, ରସାଳସା
ଯୋଷା ମଲି ତୋ ବନାରେ ।
ବର୍‌ବରନା ଧମ ଏ କାର ନୂହ ମାମ
ବାରେକ କଥା ମାନ ବସଜ ଚନ୍ଦ୍ରାନମ
(ପଦ) ମାର ମାରୁଛି……ଏବେ କର । ୩ ।



୧୨-୨-୭୨

( ୭୪ )

ତୁମେ ମୋର ଧ୍ରୁବତାରା ଘେନ ମୋ ହାର
ତୁମ ବିନା ଗତି କାହିଁ ମନ୍ଦରଧର । ୦ ।

କଳାବନେ ବକୂଳ
ମେଳେ ଖେଳ କି ଦୋଳ ।

ଅରବିନ୍ଦ ଅଧମର
ଦେଖ ମୁରଲୀଧର

ଅସବ ଅସବ ଲୁହ
ଝରଇ ସତେ ଝର । ୧ ।

ଜାଣେ ନାହିଁ ଭଜନ
ପାଦ ପାଇଁ ଗ୍ରୀଜନ —

ହେବାପାଇଁ ସେବା ନାହିଁ,
ହେ କରୁଣାକର

ଦରଶନ ଆଶା ପିନା
ଦୂହୁ କରେ ଜୁହାର



୧-୩-୭୨

( ୭୫ )

କଜଳ ନୟନ ସଜଳ ନୟନେ
ନାଚେ ଇସାସ କରି
ଜଳ ଜଳ ବଣେ ଝଜୁଳପରି ସେ
ଝଲ୍‌କଇ ଅମା ଚିରି । ୦ ।

ଘନଘଟା ଘୋର ଘେରଇ ଅପାର
ମାୟା ମୋହ ଜାଲେ ଫସ଼ିଏ ଅସାର
ସାହାସ ବା଼ଲରେ ତୁମେ ଣାରଧାର
ଆଜି କେ କରିବ ପାର । ୧ ।

ତମସା ଆଚ୍ଛନ୍ନ ହୃଦ ମନ ବନ
ଅରୁଣିମା ବନା ହେବ କି ପ୍ରସନ୍ନ
ଉଜ୍ଜ୍ୱଳ କର ହେ ଅନ୍ତର କାଳିମା
ଯାଉ ପାପ ଅପସରି । ୨ ।



୧-୩-୭୨

( ୭୭ )

ବନଫୁଲେ ଭରା
ରାଧାମନ ଗ୍ଲେବ
ତ୍ରିଭଂଗୀ ଭଂଗିମା ଠାଣି
ଲୋଚନ ଢଳ ଢଳ
ସୁଢଳ ପରିମଳ
କମଳ ଜଳ କାରୁ ଜଣି । ୦ ।

ଶିରେ ଶିଖଂଡ ଚୂଳ କୋଟି କାମ ମଞ୍ଜୁଳ
କୁସୁମ ଅଳକା ଶ୍ରେଣୀ
ଗୋପୀକୁଳ ସକଳ ବକୁଳ ଅଳିକୁଳ
ମଧୁଆଶେ ପ୍ରଣୟିନୀ
ଚନ୍ଦନ ଚର୍ଚ୍ଚିତ ନୀଳ କଳେବର
ମୁରଲୀ ମନୋହର ପାଣି । ୧ ।

ପୀତ ବସନେ ଋଦ୍ଧ ରତ୍ନ ସଜ୍ଜ ମନ ଲୋଭ
କୋଟି କାମ ରୂପ ହାଣି
ଲୋଚନ ଶର ଶିଖା ରଞ୍ଜନ ପରଖା
ଅଧରେ ଅମୃତ ବାଣୀ
ଆସ ରାଧିକାଧନ ଶୋଭ୍ମ କର ବର୍ଦ୍ଧନ
ଯୁଗଳ ମାନସ ନେଜ ଛଣି । ୨ ।



୧-୩-୭୨

( ୭୭ )

ରୂପ ଅଞ୍ଜନ ଗରବ ଗଞ୍ଜି ତୋର
ମାପ ମୂଳଆ ମାନସ ଦୁଃଖହର
ବରଜ ଗୋପାଳୀ ଚିତ୍ତଚୋର
ଗୋପିକାବଲ୍ଲଭ ଗିରିଧର । ୦ ।

ଯମୁନା ତଟ ପାଠ ବସନ ଘେର
ମାନସରଞ୍ଜନ ସୁନ୍ଦର
ପ୍ରଭୁପଦ ପଙ୍କଜ ଧ୍ୟାୟି ନିତି
ନିତି ମତି ମୋର ପରିଚର । ୧ ।

ଚଉପାଶେ ସାହା ବାହା କେହି ନାହିଁ
ପ୍ରଭୁ ତୁମେ ମୋର ସହି
ହେ ନନ୍ଦନନ୍ଦନ ପାଦେ ବନ୍ଦେ ରାଧା
ପରି ଝରିପିବ ଯନ୍ଦ ସାର । ୨ ।



୧-୮-୭୨

( ୭୮ )

ବସନ୍ତର ଅସରନ୍ତି ଫୁଲ ଫୁଟାଇ
କାହିଁ ଗଲ କାହିଁ ଗଲ
କାହିଁ ଗଲ ମୋ ସାଇଁ । ୦ ।

ମଧୁମାସେ ମଧୁନିଶି ଝଲକ
ମଳୟପରଶେ ନାଚୁଛି ପୁଲକ
ତୁମ ପାଇଁ ନାହିଁ ମୋ ପଲକ
ନିଶି ଡାକେ ସାଇଁ ସାଇଁ । ୧ ।

କୁହୁତାନେ ଭରା ଚନ୍ଦ୍ର ନିଶୀଥ
ମନ୍ଦ ଅନଳସୁ ସବୁ ସିନା ବ୍ୟର୍ଥ
ତୁମେ ମୋ ଜୀବନ ତୁମେ ତ ଅର୍ଥ
ତୁମ ବିନା ସୁଖ କାହିଁ କାହିଁ । ୨ ।



୧-୩-୭୨

( ୭୯ )

ପ୍ରଭୁ ଆଜ କେତେ ଦେବ ଦୁଃଖ
ଦୁଃଖର ଉପରେ ଲଦୁଅଛ ଦୁଃଖ
ହେଲଣି ଅତ ଅତିରେଖ । ୦ ।

ଦୁଃଖହାରୀ ନାମ ବହିଛ ଆପଣ
ମୋ ବେଳକୁ ପ୍ରଭୁ ହୁଅ ଅକାରଣ
କରୁଣା ସାଗରୁ ବିନ୍ଦୁଏ ନାହିଁକି
ମୋ ପାଇଁକି ବେଖ ଦେଖ । ୧ ।

ଘନ ଘଟା ଘୋର ଅନ୍ଧାର ମୁଲକେ
ବଜ୍ର ବିଘୋଷିତ ବିଜୁଳି ଝଲକେ
ଆସ ଆସ ପ୍ରଭୁ ସଂଚରି ପୁଲକେ
ଅଲକ୍ଷ ଜନରେ ଦେଖ । ୨ ।



୧· ୩–୭୨

## (୮୦)

ମଧୂମୟ ସଞ୍ଜେ ସବୁଜମା କୁଞ୍ଜେ
କୁସୁମ ଦୋଳରେ ବସି
ଭ୍ରମର ପରଶ ପାଇଁ ବଚେ ଧନ
ନ ଆସିଲ ଶଶୀବଂଶୀ । ୦ ।

ଉଜାଗର ରାତ ଶୀତଳ ପାହାନ୍ତ
ମଉଳା ମୋ ମନ ଝରେ ସଞ୍ଜବତ
ଫୂଲହାର ହୁଏ ବାସୀ । ୧ ।

ଦୂରଗଗନରେ ଚନ୍ଦ୍ର ନଶୀଥରେ
ଦେଖେ ଥରେ ଥରେ ଚକ୍ଷୀ ନୟନରେ
ଆଶା ମୀନ ଯାଏ ଖସି । ୨ ।

କଜଳ ବଉଦେ ସଜଳେ ନରେଖି
ନଇଜଳେ ରହେ ଜଳକା ମୋ ଆଖି
ସାକ୍ଷୀ ନଶୀ ବାରମାସି । ୩ ।

ନବଣ ଶିଶିର ଅଶାର ସକାଳ
ମଞ୍ଚଛକା ପଥେ ଢଷ ଶରଧାର
(କୁମ) ଅଙ୍ଗେ ଦେବ ପ୍ରଭୁ ଝାସି । ୪ ।



୨-୩-୭୨

( ୫୧ )

ନାଚ୍ଛିଁ ନାଚ୍ଛିଁ, ମୋହନ ନାଚ୍ଛିଁ
ଯମୁନା କୂଳରେ କାଳିଆ
ସେ ବାସ ଚ୍ଛେଚ୍ଛଏ ନାଚ୍ଛିଁ । ୦ ।

ତା ବେଣୁ ମହତ ସାରେ
ତା'ପାଇଁ ଲୋକହସାରେ
ଆପଣାର କରିଗଲ
ଲୋଚନେ ଲୋତକ ଥୋଇ । ୧ ।

କଣ୍ଠ କରି ଗଲା ଧନ
କଣ୍ଟକ ହେଲା ମୋ ପ୍ରାଣ
ଆଉ କି ଆସିବ ଫେରି
ଗଲା ଚିର ସୁଖ ନେଇ । ୨ ।

ଯା'ଲାଗି ଚିର ବସନ୍ତ
ଜୀବନ ଚିର ହରିତ
ଖୋଜିବା ନିରବେ ବୁଲି
ମାରି ଦେଲା ଆମ୍ଭପାଇଁ । ୩ ।



୨-୩-୭୨

( ୮୨ )

ବିଜନ ପଥେ ମଳୟ ବାରତା
ବିଏ ଆସ ପ୍ରିୟତମ
ସଜାଇ ରଖିଛୁ କୁସୁମ ଶେଯ
ବସାଇବି ହୃଦେ ମମ । ୦ ।

ଘନଘୋରଘଣ୍ଟା ଗସି ଇଙ୍ଗିତ
ଜୀବନେ ମରଣ ଗାଏ ସଙ୍ଗୀତ
ତୁମରି ଦରଶ ପରଶ-ପିୟାସୀ
ମୋ ଦୁଃଖ ଗୀତିକା ଖାମ । ୧ ।

ଲୋତକ ହାର ହସିବ ଉଦାସୀ
ବନ ଫୁଲହାରେ ସନ୍ଧ
ଉଜାଣି ଧାରା ଧୋଇ ତବ ପାଦ
ସରଗ ରଖିବ ବାନ୍ଧ
ଧନ୍ୟ ମଣିବ ସରଗ କଣ୍ଠା ବାଣ୍ଟି
କନ୍ୟାକୁମାରୀ ହିମାଚଳ ଯାଏ କଣ୍ଟି
ମଧୁମୟ ଧରା ମଧୁ ପସରା
ଏଇ ତ ସରଗ ଧାମ
ଝରାଇ ଅମୃତ, କର ବିତରଣ
ସୁତ ଦୋଷ ପ୍ରଭୁ କ୍ଷମ । ୨ ।



(୮୩)

ଆଣର ସେ ସୁର ଢାଳ ହେ ପ୍ରଭୁ
ଯେ ସୁର ଅମୃତଧାର
ଜୀବନର କୋଟି ଜଞ୍ଜାଳ ପାର
ନ କରିବ ପଥହରା । ୦ ।

ଯେ ସୁରେ ପାଇବେ ଚିର ବସନ୍ତ
ତୁମ ଧରାଜନେ କରି ମୂର୍ତ୍ତିମନ୍ତ
ଯାତନାଯୁକ୍ତ ଯମ ସମାଜରେ
ପରିତ୍ୟକ୍ତ ଜନେ ତୁମେ ସାହା ପରା । ୧ ।

ସଡ଼କର କୋଟି ମଡ଼କ କଙ୍କାଳ
ମଧୁମୟ ଧରା ନାମ କ ସଫଳ
ମଣିଷ ଜୀବନ ବାସନା ସବୁରି
ଏକ ପାଇଁ ନବ ସୁର ଢାଳ ଧରା । ୨ ।



୨-୩-୭୨

## (୮୪)

ଆଶାରେ ଆଶାରେ ନୀଳ ଆକାଶର ତଳେ
ମୋ ମନ ଚକୋର ବିରହ ବେଦନା ଜଳେ । ୦ ।

ନିରାଶ କର ଏ କି ହେଷ୍ଟର
ବିଷାଦମୟ ଜୀବନ ଧାର
ତୃପ୍ତ କର ହେ ସୁପ୍ତ ଅଧର
(ମୋ) ନୟନେ ନୟନ ଖେଳେ । ୧ ।

ଯେ ଅବସାଦ ଭୟ ବିପଦ—
ନାଶ ହେ ବନ୍ଧୁ ଚିର ସମ୍ପଦ
ବୈଶାଖୀ ଝଡ଼ ମାଡ଼େ ଆପଦ
ଶ୍ରାବଣର ଧାର ଜଳେ । ୨ ।

ତୁମେ ଭରସା କଳିକା ଆଶା
ହେଉ କୁସୁମିତ ଦିଅ ବରଷା
ମରୁ ମାନସେ କରିବ ବସା
ଜଡ଼ ମନ ବାହୁ ତଳେ । ୩ ।



୨-୩-୭୨

( ୮୫ )

ମଧୁ ବଣିବାସି ହୁଏ ମାଧବୀ ମଞ୍ଜଳେ
ମନ ବୃନ୍ଦାବନରେ ତୁମ ଜୋଛନା ନ ମିଳେ । ୦ ।

ବୈଶାଖୀ ଝଡ଼ ରୁଦ୍ର ପାହାଡ଼
ବଜ୍ର ଉହାଡ଼ ଆକାଶେ ଚଡ଼ ।
ଧାରା ବରଷା ମୋ ଆଖି ମାଡ଼
ସବୁ ମିଳେ ସବୁ ମିଳେ । ୧ ।

ଶରତ କାଶ ମଧୁର ହାସ
ପୂଜା ଦିବସ ଦିଆଲି ରାସ
ପଉଷ ମାସ ବଉଳବାସ
ଲୁଚକାଳି ଖେଳେ ଖେଳେ । ୨ ।

ମଧୁ ବାସର ସୋହାଗ ତାର
ଦେଇଛ ପଭୁ ଦୟା ଅପାର
ମାୟା ମମତା ଘେରା ସଂସାର
କାହିଁ ଘନଶ୍ୟାମ ଭଲେ । ୩ ।



୩-୩-୭୨

(୮୭)

ବଜାଅ ମୁରଲୀ ଥରେ
ରାଧାରାଣୀ ଝୁରି ମରେ । ୦ ।

ସରକ ସୁଷମା ଗୁଣି, ଆଣି କଲ୍ଲ ବେଦପାଣି
ତ୍ରିଭଙ୍ଗୀ ଭଙ୍ଗିମା ଠାଣି
ଦେଖାଉଅ ମନ ଜାଣି । ୧ ।

ବସନ ଶ୍ଳେଷରାଇ ଢଳେ, ବସିଲ କଦମ୍ବ ବନେ
ଯେ ଠାଣିରେ ବେଣୁଚାଳନ
ଚୋଷିଲ ଗୋପୀ ସଦନେ । ୨ ।

ଜଳ ଆଣି ଗଲ୍ଲବେଳେ, ବସିଥାଅ ଘାଟମୂଳେ
ବାଉଳା ମନ ମଉଳେ,
ଛଇଳା ତେଜ କ ଛଳେ । ୩ ।

ଢନ ହେଲାକ ପାସୋର, କୁଞ୍ଜେ ବେଭାର କଶୋର
ଢେନ ଘନଶ୍ୟାମ ଗୀର
ରାଧା ପ୍ରେମ ନ ପାସୋର । ୪ ।



୧୬-୩-୭୨

( ୮୭ )

ସାଜ ସରୋଜବଦନା ସାଜ ରେ
ଦ୍ୱିଜରାଜ ହରାଜବେ ଆଜ ରେ । ୦ ।

କରେ ଧରି ମୁରଲୀ ଡାକବେ ରାଧେ ବୋଲି
ପଥୁକୀ ହେବୁ ସଞ୍ଜେ ନିକୁଞ୍ଜରେ । ୧ ।

ହସ ହସ ବଦନ ଶୋଭୁ ପୀତ ବସନ
ମନସିଜ ବ୍ରଜରାଜ ତନୁଜରେ । ୨ ।

ଆରେ ନବ ଛଇଳ ସଜା କୁସୁମ ଦୋଳ
ଭେଜ ତେଜ ଲାଜ କୁଞ୍ଜ ଶେଯରେ । ୩ ।

ବାଜା ବାଜେ ବଜାରେ ମଚ୍ଛି ମତ୍ତ ହଜାରେ
ଧ୍ୱଜା ଉଡ଼ାଇ ରାଇଜ ବ୍ରଜରେ । ୪ ।



( ୮୮ )

ଆଉ କହନା ଆଉ କହନା
ଆଉ କହନାରେ
ନଟକୁଟିଆ ଶ୍ୟାମର ନାଁରେ । ୦ ।

କହୁଛୁ କର ଧର ତା ପାଇଁ ଗଲ ସର
ମାର ତ ହେଲ ଅର ବରଜେ ପଡ଼େ ହୁର
ଲଜ ମହତ ଆଉ ସାରନାରେ । ୧ ।

ମୁରଲୀ ଯାଉ ଭାଜ କଦମ୍ବ ଯାଉ ହଜ
କଳଭ କୁଞ୍ଜ ସାଜ ଆଉ ପିନ୍ଧନ ଖୋଜ
ଧୋକାବାଜଆର ନାମ ଧାରନାରେ । ୨ ।

ଯମୁନା ଘାଟପଡୁ ମୁରଲୀ ଡାକ ସତୁ
ରାଧା ନାମଟି ଶୁଣୁ ବୋଲଣା ଦ୍ୱାରଆଡୁ
ଆଉ ତା କଥା କହୁ ମାରନାରେ । ୩ ।



୧୧-୪-୭୨

( ୮୯ )

ଭୁହାଇ ଭୁହାଇ କର ପଶ୍ୱରୁଛି ଜଉର
କେ ଦେଇଛି ଆକାଶରେ ମାଳଭରା ସ୍ୱଦର । ୦ ।

ତରୁଲତା ଫୁଲବନ ଝରଣା କୁହୁତାନ
କେ ଦେଇଛି ଚଉଦିଗେ ସବୁଜିମା ପଟର । ୧ ।

ଜଳରେ ଅମୃତ ଗୁଣ  କେ ଦେଇଛି ସୁଧାପାନ
ଫୁଲରେ ବିରଙ୍ଗ ରଙ୍ଗ କୋଇଲିର ସୁସ୍ୱର । ୨ ।

କଳିକା କେ ଫୁଟାଇଛି କାପାଇଁ ଫୁଲ ଝରୁଛି
ବୈଶାଖର ରୁଦ୍ରତାପ କେ ଦେଇଛି ଶିଶିର । ୩ ।

ଶ୍ରାବଣର ଝର ଧାର କେତେ ହସ ବସନ୍ତର-
ସ୍ନେହ ମଳୟ ସମୀର କେ ଦେଇଛି ଏ ପୁର । ୪ ।

ଭକତ ସଳିତା ଜଳେ ଅନ୍ତରେ ସତତ ଭାଳେ
କେ ଦେଇଛି ଏ ପ୍ରେରଣା କହ କହ ଏଥର । ୫ ।

ଯେବେ ରୂପ ଗନ୍ଧ ନାହିଁ ଖୋଜବୁଲେ ପକ୍ଷୀ ତହିଁ ।
ସଂକେତ ଦେଲେ ରହିବ ତୁମ ଭକ୍ତ ମାତର । ୬ ।



(୧୪-୫-୭୨)

( ୯୦ )

ଆକାଶର ନୀଳମାରେ
ତୁଅ କବା ପରକାଶ
କେତେ ଆଖି ଦେଇ ଦେଖେ
ସାକ୍ଷୀ ତ କୁସୁମ ବାସ । ୦ ।

ଫୁଲ ବନେ କଳକାରେ
ଅଛ ବୋଲି ମନେ ଧରେ
କଳକା ଝରଇ ଯେବେ
ତୁମ ଦେଖା ଆଶା ମରେ । ୧ ।

ଧାର ଶିରବଣ ମେଘେ
ବଜୁଳ ଝଲସା ମାରେ
ତୁମ ରୂପ ଝରେଖଇ
ଲୁଚ ଥାଅ କେଉଁ ପାରେ । ୨ ।



୨୩-୫-୬୨

( ୯୧ )

ନନ୍ଦସୁତ ହେ, ବାଟ ଛାଡ଼ିବା ହେଉ
ତୁମ ପାଇଁ ପଥ ବାଜୁଛି ନାଗର
ଗୋପ ସାରା ହାଟ ନ କର ଆଜ । ୦ ।

ଯମୁନା ଘାଟରେ ଘଟ ଧରି ଟାଣି
ଛଟପଟ କଲ ଗୋପ ଘରଣୀ
ହେ ଜଗି ସରଣୀ
ଉତ୍କଳ ଧରଣୀ ଗୋପ ଗୋପାଙ୍ଗଣୀ
ବଣା ଏଣୀନେତ୍ରୀ ପୁରୁଷ ଆଜ । ୧ ।

ଛନ୍ଦୁ ତୁମ କଳା ପିନା କଳାକର
ବଳ କଲୁ ବଦ୍ଧ ସୁଷମା ଆକର
ହେ ନାହିଁ ଫିକର
ଆମେ ଭୂଆସୁଣୀ କୁଳର ଘରଣୀ
ଆଜ କେତେ କହ ସହିବୁ ଦାଉ । ୨ ।



୨୯ ୬-୭୨

( ୯୨ )

ମନ ଶ୍ୟାମସୁନ୍ଦର ଗୁଣ ଗା'ରେ
ପଦ-ପଙ୍କଜ-ମକରନ୍ଦ ଖା'ରେ । ୦ ।

ମନସିଜ କୋଟିକ    ଜିତ ରୂପ ଜ୍ୟୋତିକ
ଜାଳି ହୃଦେ ବତିକ,
ତେଜରେ, ସାଜରେ, ପୂଜରେ, ଆଜରେ । ୧ ।

ପୁରନ୍ଦର ଶଙ୍କର    ବ୍ରହ୍ମା ଆଦି କଙ୍କର
ଯାହାର ପରଶ୍ୱର,
କ୍ଷିତିରେ, ନତିରେ, ମତିରେ, ଅତିରେ । ୨ ।

ଭୂଷା ପୀତବସନ    କରେ ମୁରଲୀ ସ୍ୱନ
ବ୍ରଜ ମୋହନ ମନ,
ପାଦରେ, ଆଦରେ, ସାଦରେ, ମୋଦରେ । ୩ ।



୨୯-୬-୬୨

( ୯୩ )

କଅ ପ୍ରଭୁ ପୂଜା କଅ
ବନ୍ଧବନ ଧର ରଖିଛୁ ପ୍ରଭୁ ହେ
ଲୋତକ ଢାଳନ୍ତି କଅ । • ।

ଜୀବନ ଦୁଆର ଖୋଲି ଅଛୁ ଦେଖ
ତୁମ ଆଗମନ ପାଇଁ
ଦାସ ପାଏ ଶ୍ୱାସ ଦୁଃଖ ଉପବାସ
ତୁମ ପଥ ଚାହିଁ ଚାହିଁ
ପ୍ରଭୁ ତୁମେ ଦୂରୁ ନମେ
(ମୋର) ଅନ୍ତରେ ଅନ୍ତରେ ରହ । ୧ ।

ନ ମାନ ଶ୍ରାବଣୀ ଅସାର ରଜନୀ
ଉଜାଗର ତୁମ ପାଇଁ
ଶୀତ କାକର ବା ଗ୍ରୀଷମ ଭୀଷମ
ମଣେ ଏକାକାର ସାଇଁ
ଜପେ ନାମ ଅବିରାମ
(ମୋତେ) ଦରଶନ ଟିକେ ଦିଅ । ୨ ।



୧୮-୮-୭୨

( ୯୪ )

ରସନଧି, ମୋ କନ୍ତ ଆସିବ
ରସସାଗରେ ମନ୍ତ ଝାସିବ
ହସ ପ୍ରକାଶି ଭାଷା ଭାଷିବ
ଭସ ନାଗର ଆସ ରସିବ
ଝସକେତନ ତ୍ରାସ ନାଶିବ (ଘୋଷା)

ବାଳାକୁ ଧରି ମୁଁ ଖେଳା ଖେଳାଇ
ଚଳାପାଙ୍ଗୀ କୋଳେ ମନ୍ତ ବଳାଇ
ଜଳାଇ ଵଦେହ ବାଣରେ ଦେହ
ରତ୍ନ ଭୂଷଣେ ସତୀ ହସିବ
ବାସ ଭିଡ଼ଲେ କରେ କସିବ
ଇସି ରସିକ ଚନ୍ଦ୍ର ଝଣିବ
ଭକ୍ତି ଶରଣ ଆସି ପଶିବ
ଉରେ ନବେଣୀ ଉର ବସିବ । ୧ ।

ଭୂକର ପଣ୍ଡରେ କରକୁ ଧରି
ପଲଙ୍କେ ପକାଇ ଅଙ୍କେ ବହରି
କର ଦେଲେ ଶମ୍ଭୁ ଶିରେ ଭାହାର
ରନ୍ତଦାନରେ ମନ୍ତ ତୋଷିବ
ଧରି ଅଧର ମୋର ଶ୍ଳେଷିବ
ରନ୍ତ ସୁଧାରୁ ମୋତେ ପୋଷିବ
ବାସ ପାଶରେ ଦେଖି ରୋଷିବ
ମାର ମରନ୍ତେ ମନ୍ତ୍ର ଘୋଷିବ । ୨ ।



୧୮-୮-୭୨

( ୯୫ )

ମଧୁମାସ ହେଲା ପ୍ରବେଶ
ବସିଲାଣି ଋତୁ ପୁଷ୍ପ ଅଶେଷ···(ପଦ)

ମାର କଲା ବଜେ ମରତେ, ସାରସକୁ ଘେନ ସରତେ
ମନ୍ଦ ମୃଦୁ ଡାକ କାମି-ଜନେ ମନ୍ଦ
ନରଦ ଦରବେ କଲା ସରସ । ୧ ।

ଫୁଟିଲେଣି ମଲ୍ଲୀ ବଲ୍ଲରୀ, ଘୋଟିଲେଣି ମଳୟ ଶିରୀ
ଚନ୍ଦ୍ରଦଗେ ବାସ ହାସ ପରକାଶ
କିଂଶୁକ କେତକୀ ହେଲେ ପ୍ରକାଶ । ୨ ।

ନବପତେ ପାଦପଚୟ, ଛନ୍ଦେ କବା ଶୋଭା ଉଦୟ
ଅଶୋକ କଳିକା ବକୁଳ ମାଳିକା
କରେ ଧରି ରାଧା କୁଞ୍ଜେ ପ୍ରବେଶ । ୩ ।

କୁଞ୍ଜ ଶୋଭା କବା ଲେଖିବ, ବାଳଅର୍କ ଜିତ ତା ଛବ
ମୋହନ ମୁରଲୀ କରେ ଧରି ରଙ୍ଗି
ଡାକନ୍ତି ରାଧିକେ ଆସ ଗୋ ଆସ । ୪ ।



୧୧-୯-୭୨

( ୯୭ )

ଧାଉଁଛୁ ସେହ୍ନ ସରଣୀ, ଲୋ ମିତ ମୁଁ, ନନ୍ଦା ଅପନନ୍ଦା
ଚନ୍ଦନ କରୁଛୁ ଏ ଗୋପନଗରର ଜାଣି ଲୋ,...
ମଧୁର ବଚନ ସେହ୍ନ ବଂଶୀସ୍ୱନ ଶୁଣି ତାର ଗୁଣ ଗୁଣି ଲୋ (ପଦ)

ସେହ୍ନ ମୋର ଜୀବ ଜୀବନ ସମ୍ଭବ
ତା'ବିନା ବଦେହ ମଣି ଲୋ । ୧ ।

ବକୁଳ ଝଂଟକ ନୟନ ଛଂଟକ
ଜଣି ସେ ଶ୍ୟାମର ଠାଣି ଲୋ । ୨ ।

ଷଣ୍ମପୁର ଶୋଭା ଦଳଆଣି ଝୁଳ
ଗଢ଼ିଲ ବଧି ଧରଣୀ ଲୋ । ୩ ।

ଜାଗ୍ରତ ନୟନେ ନଶିଥ ଶୟନେ
ସ୍ୱପନେ ଶୁଭଇ ବାଣୀ ଲୋ । ୪ ।

ସେହ୍ନ ମୋର ସତ୍ୟ ସେହ୍ନ ମୋ ସୁନ୍ଦର
ଶିବ ସେ ପରଶମଣି ଲୋ । ୫ ।



୧୨-୯-୭୨

( ୯୭ )

ଶୀତଋତୁ ହେଲାରେ ମିତ, ଶ୍ୟାମ ବିନା କାହିଁ ପାଇବ ହିତ (ପଦ)

ନିଶାପତି କର ନିକର, ଦିଶା ଦେଲା ହେମ ଆକର
ଅରୁଣ କିରଣ ଆପୁଷ ଭୁଟିଲା, ଶୀତ ବାତେ ଅତି ତନୁ ଅହିତ । ୧ ।

ଦିବାକର କର ନ ପାଇ, ନୀରେ ମଳା କମଳ ଯାଇ
ତଟିନୀ ବେନକୂଳ ହୋଇଲେ ବିକଳ, ରଜନୀ ସଜନୀ ବଢ଼ି ବଦ୍ଧିତ । ୨ ।

ଅନ୍ତସ୍ତଳେ ବିରହାନଳ, ବେଳୁବେଳ ହୁଏ ପ୍ରବଳ
ଶୀତକାଳ ହେମ ନ ହିଏ ଆଗମ, ଅବିରାମ ଜଳେ ଜଳାଇ ଚିତ୍ତ । ୩ ।

ବନ୍ଧୁ ମୋର ଆସିବେ ବୋଲି, ସିନ୍ଧୁ ଆଶା ମୁଁ କରିଥିଲି
ନୟନ ସଲିଳେ ବୁଡ଼ି ମଲି ଏବେ, ଆଉ କି ପାଇବି ହୃତ ଅମୃତ । ୪ ।



୨୧-୯-୬୨

( ୪୮ )

ଘନକାଳ ନଣୀ ସଜା ଝଲ୍ଲରେ (ପଦ)

ନଣୀ ହେଲା ଅମାପ, ଦେଖ ମଦନ ଚାପ
କିଶୋର ଝିନା ମୋ ତନୁ ଦଲ୍ଲରେ ।୧।

ମଞ୍ଜୁଳାଲ କୁସୁମ ହାର ଅତି ସୁଷମ
ବାସନା କୋଢ଼ ଶଠେ ବଲ୍ଲ ରେ ।୨।

ଘୋଷି ଘୋଷି ତା ନାମ ବସିଛୁ ଅଷ୍ଟଯାମ
ତଥାପି ଶଠେ ଦୟା ନୋଲ୍ଲ ରେ ।୩।

ପର କ କଲେ ଆଉ ପରଖି କବା ଯାଉ
ଭଲ ପୁରୁଷ ତନୁ ସଲ୍ଲ ରେ ।୪।

ଘନଶ୍ୟାମେ ମୋ ମତ ତା ବିନା ନାହିଁ ଗତ
ଚଖାଅ ତା ପୀରତି ଛଇଲ ରେ ।୫।



୨୧-୯-୭୨

( ୯୯ )

ରେ ସଙ୍ଗାତ, ସେ ପିନା ମୋ ସୁନାହାର ।
ତାର କର ଥିଲେ ମୋ ଗଳାର ହାର
ଅଷ୍ଟମଣି କବା ସ୍ଥର (ଘୋଷା)

ତାରକ ଅଇଣ ଜନକ ବଇଣ ଗରବ କରେ ଖରବ
ତା ପାଣ ମୋ ବାସ ରଚେ ଯେବେ ରସ ଫଳ ପାଏ ଅପୂରୁବ ରେ । ୧ ।

ନୟନ କଟାକ୍ଷ ମଦନ ବପକ୍ଷ ସୁନ୍ଦର ତାର ଠାଣିକ
ବସ୍ଥାନ କରବା ପାଇଁକ ସ୍ୱୟଂଭୂ ହିବେନ ମୁଖେ ବାଣିକ ରେ । ୨ ।

ବଚନ ଅମୃତ ସ୍ୱଷ୍ଟଭ୍ରଷା କୃତ ବଧାତା ଦୟାରୁ ପାଇ
ଅନୁଭବ ପିନା ଜାଣେ ସବୁକଛୁ ଅନୁଭବ ବନା କାହିଁ ରେ । ୩ ।

ସଚେକ କଶୋର ମୋତେ ମନେକଣ କୁଞ୍ଜରେ ଦର୍ଶନ ଦେବେ
ଘନଶ୍ୟାମ ବନା ଦବସ ଅନ୍ଧାର ଅନ୍ଧାରେ ପଥ କାଢ଼ିବେ ରେ । ୪ ।



୨୧-୯-୭୨

( ୧୦୦ )

ଆଉ ରୁଷାକୁ, ସଖୀ ଘୁଡ଼ ଘୁଡ଼ ଫେଡ଼ ଦଶାକୁ ରେ······(ପଦ)

କହି ସରୁଆ ଧନୀ, ଧନକା ବଗ୍ରନମୀ
ରସିକା କେ ସର ଭୂଷାକୁ ରେ । ୧ ।

ବାସଦ୍ଵାସ ପ୍ରକାଶ ସରସିଜ ବକାଶ
ସରସ ରସାଳ ରସାକୁ ରେ । ୨ ।

ଛେଜ ଛେଜ ସରମ ନରମ ତନୁ ଯମ
ଭୁ ସିନା ମୋ ସୁନା ଆଶାକୁ ରେ । ୩ ।

ମାର ମାରେ ମାର୍ଗଣ ମରଛେ ସଖୀଗ୍ରଣ
କେ ସର ତୋ ପାଦଦଷାକୁ ରେ । ୪ ।

ଭୁହ୍ଵ ଜୀବନ ବନ- ଜାକ୍ଷୀ ଛେଜ ଗୁମାନ
ବଜାଅ ମଙ୍ଗଳ ଢଶାକୁ ରେ । ୫ ।

---

( ୨୨-୯-୭୨ )

ମୁଦ୍ରାକର ନବଜୀବନ ପ୍ରେସ୍, ଗୃନ୍ଦମାଚୌକ, କଟକ-୨



## ଶ୍ରୀଯୁକ୍ତ ଘନଶ୍ୟାମ ରଥ

ଜନ୍ମ – ୮।୬।୧।୧୯୩୦

**କର୍ମମୟ ଜୀବନରୁ ପଦେ** – ୧୯୫୩-୫୪ ଶିକ୍ଷକତା, ୧୯୫୫-୧୯୬୨ ପୋଲିସ ବିଭାଗରେ କୋର୍ଟ ଦାରୋଗା (ସବ୍‌ଇନ୍‌ସ୍‌ପେକ୍‌ଟର)। ଏହି ସମୟ ମଧ୍ୟରେ ଆଇନ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ୧୯୬୩ ମସିହାଠାରୁ ସମ୍ବଲପୁରଠାରେ ଆଇନ ବ୍ୟବସାୟ। ୧୯୭୦ ମସିହାଠାରୁ ସମ୍ବଲପୁର ଲାଲ ଲଜପତ ରାଏ ଆଇନ କଲେଜରେ ସାମୟିକ ଅଧ୍ୟାପକ।

**ସାମାଜିକ ସେବା ଓ ସଂସ୍ଥାରେ ସହଯୋଗ** – ସମ୍ବଲପୁରର ବିଭିନ୍ନ ଛାତ୍ରସଂସ୍ଥ ଶିକ୍ଷା ଓ ସାଂସ୍କୃତିକ ଅନୁଷ୍ଠାନର କର୍ମକର୍ତ୍ତା ତଥା ଉପଦେଷ୍ଟା ଭାବେ ସମ୍ମାନିତ। ଭାରତ ସୋଭିଏତ୍ ସାଂସ୍କୃତିକ ସମିତି ଓଡ଼ିଶା ଶାଖାର ରାଜ୍ୟସ୍ତରୀୟ ସଦସ୍ୟ ତଥା ସମ୍ବଲପୁର ଏବଂ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ରେଜିଷ୍ଟର୍ଡ଼ ଗ୍ରାଜୁଏଟ୍ ମଣ୍ଡଳୀର ଆଜୀବନ ସଦସ୍ୟ। ଅଖିଳ ଭାରତୀୟ କଂଗ୍ରେସ ଦଳର ଜଣେ ସକ୍ରିୟ ସଦସ୍ୟ। ସଭାପତି, ଯୁବ ଲେଖକ ସମ୍ମେଳନ, ୧୯୭୩।

**ସାଂସ୍କୃତିକ କୃତି** – ୧୯୭୦ରୁ ଧାରାବାହିକ ଭାବରେ ବାଣୀ ଭଣ୍ଡାରକୁ ସମୃଦ୍ଧ କରିବାରେ ଉଦ୍ୟମ କରୁଛନ୍ତି। ଓଡ଼ିଶାର ସୁନାମଧନ୍ୟ ପ୍ରତିଷ୍ଠିତ ସାହିତ୍ୟ ସଂସ୍ଥାର ସ୍ମରଣିକା, ମାସିକ ପତ୍ରପତ୍ରିକା ତଥା ଦୈନିକ ପତ୍ରପତ୍ରିକା ସାହିତ୍ୟ ଆଲୋଚନା ଏବଂ ପ୍ରବନ୍ଧ ଲେଖି ଆସୁଛନ୍ତି। ସ୍ୱରଚନାରୁ ୧୯୬୮ରେ ଅଭିଶପ୍ତ ବକ୍ଷ, ୧୯୭୧ରେ ଯତ୍‌କିଂଚତ୍ ପ୍ରକାଶିତ। ୧୯୬୧ରେ ସମ୍ବଲପୁର ଜେସିସ୍ ସ୍ମରଣିକାର ମୁଖ୍ୟ ସଂପାଦକ। ୧୯୭୨ରେ "ରୂପ ରସାମୃତ" ପ୍ରକାଶିତ।